# ବାଲ୍ୟକୈଶୋରରୁ ଫରିଣତ ବୟସର କେତେକ କବିତା

ରଚନାଃ
ଲଲାଟେନ୍ଦୁ କବି ଓ ମଞ୍ଜୁବାଳା କବି

## ଭିକ୍ଷା

ଭିକ୍ଷାର ଥାଳ ଥୋଇଲି ତୋ ପଦ ତଳେ
ଅନାଦର କରି ଆଡେଇ ଦେବୁନି ସଖି,
ସଙ୍ଗୀତ ମାଳା କରି ନିବେଦିଲି ଗଳେ
ନୟନ ପଲକେ ଯେ ଭାଷା ଯାଇଛୁ ଲେଖି | -୧

ସରଳ ତରଳ ଚପଳ ସେ ଚାହାଣୀରେ
ସକଳ ଆବେଗ ସତେ କି ହେଇଛି ଲେଖା;
ଏତେଦିନ ଯାହା ଖୋଜୁଥିଲି ଅନ୍ଧାରେ
ତହିଁ କି ଝରିଲା ସହସା ଆଲୋକ ରେଖା | -୨

ସେହି ଆଲୋକରେ ଦେଖିଲି ମୋ ମନ ମାଜି
ବାନ୍ଧିଛି ମୋତେ ତୋହରି ମମତା ଡୋର,
ଆସିଛୁ ଗୋ ସଖି ପ୍ରଣୟିନୀ ମୋର ସାଜି,
ଆଶ୍ଳେଷ ଆଜି ମାଗୁଅଛି ତେଣୁ ତୋର | -୩

*ଲଲାଟେନ୍ଦୁ କବି*   ୧୯୭୦

## ଶୈଶବ

ଶୈଶବ ଗଲ ସିନା ଚାଲି,
    ମଧୁମୟ ସ୍ମୃତି ତବ ଖାଲି
ପଡଇ ମୋ ମୋ ମନେ;
    ଏ ଜୀବନେ ଆଉ କେବେ ଦେଖା
    ତୁମ ସଙ୍ଗେ ନାହିଁ ଭାଗ୍ୟେ ଲେଖା.
ହେଲେ ହେବ କେବଳ ସପନେ |      -୧

ତଥାପି ତ ତୁମରି ସ୍ମରଣେ
ମନ ମୋର ହୁଅଇ ଉଶ୍ୱାସ,
ଆସୁଥିବ ମୋର ସ୍ମୃତି ଦେଶେ,
ଅରପିଲି ପ୍ରାଣର ଆବେଗେ
ସ୍ୱାଗତ ସମ୍ଭାଷ |        -୨

ଲଲାଟେନ୍ଦୁ କବି,  ୬ - ଫେବୃୟାରୀ = ୧୯୭୧ ୍

## ମୋ ପରିଚୟ

କିଏ ମୋତେ ପ୍ରଶ୍ନ କଲା
"କିଏ ତୁମେ" ବୋଲି,
ନ ପାରିଲି ଦେଇ ତା ଉତ୍ତର,
ହତବାକ୍ ହେଲି |        -୧

ଏ ପ୍ରଶ୍ନ ଉତ୍ତର ବ୍ୟଗ୍ରେ
ଖୋଜିଲି ମୁଁ ସୃଷ୍ଟି ପ୍ରତି ରନ୍ଧ୍ରେ,
ମନ୍ଦିରେ, ସାଗର ଜଳେ,
ବେଳାଭୂମେ, ମୁକ୍ତ ଅନମ୍ବରେ;  -୨

ଖୋଜିଲି ପ୍ରଭାତେ ସଞ୍ଜେ,
ନ ମାନିଲି ଦିବସ ରଜନୀ,
ଅଥୟ ହେଲି ମୁଁ ସିନା,
ଉତ୍ତର ତ ଖୋଜି ପାଇଲିନି !   -୩

ହତାଶେ ବିଜନେ ତହୁଁ
        ବିଳପିଲି କେତେ ବସି ବସି,
ଅକସ୍ମାତ୍ ନେତ୍ରୁ ମୋର
        ବିନ୍ଦୁ ଏକ ଅଶ୍ରୁ କହେ ଖସି,     -୪

"କି ଲାଗି ବ୍ୟାକୁଳ ମନେ
        ଖୋଜି ଖୋଜି ବୁଲୁଥିଲ ମୋତେ,
ମୁଁ ତୁମର ଅଧେ ବନ୍ଧୁ,
        ମୁଁ ତ ଅଛି ତୁମ ସାଥେ ସାଥେ |"     -୫

ନ ପାରିଲି ବୁଝି କିଛି,
        ମୁଖୁଁ ମୋର ନିଃସରିଲା ହସ,
କହେ ତା'ର ପ୍ରତିଧ୍ୱନୀ,
        "ତୁମର ମୋର ଅପର ଅର୍ଦ୍ଧାଂଶ |"-୬

ପାଇଲି ମୁଁ ସତ୍ତା ମୋର
        ମୋହରି ଭିତରେ,
ଅନ୍ତରୁ ନିଃସୃତ ମୋର
        ସ୍ୱଳ୍ପ ହସେ
                ତିକ୍ତ ନେତ୍ର-ନୀରେ |     -୭

*ଲଳାଟେନ୍ଦୁ କବି*   ୮ ମାର୍ଚ୍ଚ ୧୯୭୧

## ସେହି ମୋ ଗଉରବ

ପ୍ରଥମ କରି ଯେବେ ହେଲୁରେ ସାଥୀ ମୋର,
ମଣିଲି ସତେ ଅବା ଲଭିଲି ତପୋଫଳ |    -୧

ପ୍ରଥମେ ଯେବେ ମୋତେ ଡାକିଲୁ 'ଭାଇ' ବୋଲି,
ଅସୀମ ଶରଧାରେ ଉଛୁଳି ପଡିଥିଲି |     -୨
ରଚିଲି ତୋତେ ଘେନି କେତେ ଯେ କଳପନା,
ମନାସିଥିଲି କେତେ ତୋ' ଲାଗି ସୁକାମନା |-୩
ରଖିଲି ହୃଦୟରେ ତୋ' ଲାଗି ସ୍ଥାନ ଗୋଟି,
ସାକ୍ଷୀ ଅଛନ୍ତି ତାର ଏ ଭୂମି ଧୂଳି ମାଟି |    -୪

ଲଭିଲି କି ଯାତନା ଦୂରେଇ ଗଲୁ ଯେବେ ,
ସେ କଥା ଭଷାରେ କି ପ୍ରକାଶି ହେବ ଲବେ ?-୫

ହେଲେ ହେଁ ତୋ' ଭାବନା ମୋ' ମନେ ରହିଥିବ,
ଅତୀତ ସ୍ମୃତି ଟିକେ, ସେହି ମୋ ଗଉରବ | -୬

*ଲଳାଟେନ୍ଦୁ କବି*          ୧୬ ଫେବୃୟାରୀ ୧୯୭୦     ঃ

## ଶିଶୁର ପ୍ରଥମ ଦୁଃଖ

"ମଧୁର ବସନ୍ତ କାଳ ବିରାଜିଲା ଆସି
ସୁମନ ସୁଗନ୍ଧେ ଦେଖ ଭ୍ରମରଟି ମାତେ,
କହ କେତେ ଥିବି ଆଉ ଏକାଟିଆ ବସି,
ଭାଇ ନାହିଁ ଆଉ ମୋର ଖେଳିବାକୁ ସାଥେ | -୧

ଟହ ଟହ ହସୁଅଛି ପ୍ରଜାପତି ଗୋଟି
ଜଳଜଳ ସୂରୁଯର ସୁନେଲି କିରଣେ,
ବଳୁ ନାହିଁ ମନ ଯାଇ ଧରିବାକୁ ସେଟି ,
ମୋ ଭାଇର ମୁହଁ ଖାଲି ଆସୁଛି ସ୍ମରଣେ -୨

ଲଗାଇ ଯେ ଥିଲୁ ଆମେ ବଗିଚାରେ ଫୁଲ ,
ଫୁଟି ଦୋଳୁ ଅଛି ଧୀର ମଳୟ ବତାସେ ,
ଫୁଲ ଭାରେ ତଳେ ଲୋଟି ପଡୁଅଛି ଡାଳ ,
କାହିଁ ସେ ଯାଇଛି, ଥରେ ଡାକି ଆଣ ପାଶେ |"-୩

"ସିଏ ତ ଶୁଣୁନି ତୋ'ର ମଧୁର ବଚନ,
ଯାଇଛି ସେ, ଆସିବନି ଆଉ ତୋ'ର ପାଶ ,
ସେ ଦିନ ଯେ ହସୁଥିଲା କଇଁଫୁଲ ସମ ,
ନ ଦିଶିବ ପୃଥବୀରେ ଆଉ ତା'ର ହସ | -୪

ଦୁଇ ଦିନ ପାଇଁ ଫୁଟି ଯାଇଛି ସେ ଝଡି ,
ସୁଗନ୍ଧିତ ସମୁଜ୍ଜ୍ୱଳ ପ୍ରସୂନ ସମାନ ,
ଖେଳୁଛି ତାରାଙ୍କ ମେଳେ ଆକାଶରେ ଉଡି,
ସେ ଲାଗି ଏକାକୀ ତୁହି ଖେଳିବୁ ରେ ଧନ |"-୫

"ଛାଡି ସେ ଯାଇଛି ତେବେ ଫୁଲ ସବୁ ତା'ର,
ନେଇନି କି ପାଇଁ ପକ୍ଷୀ ଯେତେକ ସଙ୍ଗତେ ?
ଡାକିବା ଯେତେ କି ସବୁ ବୃଥା ହେବ ମୋର,
ଥରେ ସେ ଆସିବ ନାହିଁ ଏ ଦୀର୍ଘ ବସନ୍ତେ ?-୬

ନଦୀ ତଟ ଆଡେ ଆଉ ଯିବା ନାହିଁ ବୁଲି,
ବୁଲିବାନି ବିଲ, ବଣ, ସବୁଜ ପ୍ରାନ୍ତର,
କିଆଁ ଭାଇ ଆସୁ ନାହୁଁ, କି ଦୋଷ ମୁଁ କଲି,
ଊଣା କିରେ ହେଲା ତୋତେ, ସେନେହ ମୋହର ?"-୭

*ଲଲାଟେନ୍ଦୁ କବି*     ୨୩ - ମାର୍ଚ - ୧୯୬୯

୍

## ତୁମରି ମହିମା ଗାନ

ଶୀତଳ ପ୍ରଭାତ ମୃଦୁ-ମନ୍ଦ ସମୀରଣ
ଯେ କାଳେ ଶରୀରେ ଭରିଦିଏ ଶିହରଣ ;
କ୍ଷୁଦ୍ର ବିହଗ ଗୀତ ଗାନେ ସୁମଧୁର,
ମୁଖରିତ ହୁଏ ବନ ବନ ବନାନୀ ନିକର;
ସେତେବେଳେ ପ୍ରଭୁ ବିଶ୍ୱ-ସୃଜନ-କାରଣ,
ତୁମ ଚିନ୍ତନେ ଉଲସି ଉଠଇ ପ୍ରାଣ ।-୧

ଦି'ପହର ବେଳେ ତରୁଛାୟା ତଳେ ବସି,
ଶୁଣେ ଯେବେ ଦୂରୁ ବଂଶୀ ଆସଇ ଭାସି,
ସୁଶୀଳା ତଟିନୀ ଧୀରେ ଧୀରେ ଯାଏ ବହି,
ଯୁଗ-ଯୁଗାନ୍ତର ଗୋପନ ବାରତା କହି,
ଦୂର ଆମ୍ବଡାଳୁ କୁହୁ କୁହୁ ପିକ ସ୍ୱନ
ଶ୍ରବଣରେ ଯେବେ ନାଚି ଉଠେ ମୋର ମନ,
ସେତେବେଳେ ଆହେ ବିଶ୍ୱପାଳକ ପିତା,
ସ୍ମରଣକୁ ଆସେ ତବ ମହାନତା କଥା ।-୨

ପ୍ରତିଚୀ ଦିଗନ୍ତ ସିନ୍ଦୂର ବିନ୍ଦୁ ସମ
　　ଶୋଭାପାଏ ଯେବେ ଭାସ୍କର ତେଜୀୟାନ,
ଅପର ଦିଗରେ ଇନ୍ଦ୍ରଚାପର ଆଭା
　　ସପ୍ତ ବରଣ ଧରି ଦିଶେ ମନୋଲୋଭା,
ସେତେବେଳେ ପ୍ରଭୁ ଆଦି-ଅନ୍ତ-ସୀମାହୀନ,
　　ପଡିଯାଏ ମନେ ତୁମରି ମହିମା ଗାନ |-୩

ଲଲାଟେନ୍ଦୁ କବି　(ଏକ ଶୁକ୍ରବାର, ପ୍ରାକ-ବିଶ୍ୱବିଦ୍ୟାଳୟ ଶ୍ରେଣୀ, ୧୯୬୮ କିମ୍ବା ୧୯୬୯)　୍

## ଖେଳିବା ଖେଳ

ସେ ଦିନ ସଖି ଆଲୋ
　　ଏଇ ତଟିନୀ ତୀରେ
ଅଧର କମ୍ପନେ
　　ଗୋଧୂଳି ଲଗନରେ
କହିଲୁ ପରା " ଘେନ
ପରାଣ ଯଉବନ,
ଆସ ହେ ଯିବା ଭାସି
　　ଆକୁଳ ପ୍ରେମ-ନୀରେ ,"
　　ଏଇ ତଟିନୀ ତୀରେ |　-୧

କହିଲି ତୋତେ ଯେବେ
"କ୍ଷଣିକ ଯଉବନ,
ତେବେ କି ଲାଗି ମିଛେ
ପ୍ରଣୟ-ଅଭିଯାନ ?
ଜନମିଛୁ କି ଖାଲି
ଆପଣା ସୁଖେ ଭୁଲି -
ଯିବାକୁ ଜଗତର
ସକଳ କଥାମାନ ?"
କରିଲୁ ଅଭିମାନ |-୨

ଚମକି ତୋ ମୁହଁକୁ
ରହିଲି କ୍ଷଣେ ଚାହିଁ;
କାତର ସନ୍ତ୍ରମେ
ତୁ ତହୁଁ ଗଲୁ କହି ,
"ନୁହେଁ ଗୋ ନିଜ ଲାଗି,
ଉଠିବା ଆସ ଜାଗି
ନିବିଡ ବନ୍ଧନେ
ଦୁନିଆଁ ଚମକାଇ,
ଜଗତ ସେବା ପାଇଁ |"-୩

ଚାହିଁଲି ତୋ ମୁହଁକୁ
ହସିଲୁ ମନ ଖୋଲି ,
ଧୀରେ ତୋ ଅଧରରେ
ପରଶି ଦେଇଥିଲି ,
ସରିତ ଜଳଧାରା ,
ଆକାଶେ ଶତତାରା,

ଆମରି ପଣ ଦେଖି
      ରହିଲେ ଆଖି ମେଲି,
      ହସିଲୁ ମନ ଖୋଲି ।     -୪

ସେ ଦିନ ହସି ଆମେ
      ପାଇଲୁ କେଡେ ସୁଖ !
ଶୁଭୁଛି ଏଣେ ଚାହାଁ
      ବିକଳ କାହା ଡାକ !
ଚାହାଁ ଲୋ ଚାହାଁ ଥରେ
ସେ ଦୂର ଅତୀତରେ ,
ସେ ଦିନ ପଣ ଆଜି
      କରିବା ଟି ପରଖ ;
      ଶୁଭୁଛି କାହା ଡାକ ।     -୫

ଆ’ ଲୋ ଆ’ ସଖି
      ଆସିଛି ଏବେ ବେଳ ,
ଖେଳିବା ଆ’ ଏବେ
      ତ୍ୟାଗର ମହାଖେଳ ;
ମାଟିର ଡାକ ଏଇ
ଶୁଭୁଛି ରହି ରହି
ଶୁଣିବା ଦିନେ ତା’ର
      ଫୁଲ୍ଲ କଳରୋଳ
      ଆସିଛି ଏବେ ବେଳ ।    -୬

*ଲଳାଟେନ୍ଦୁ କବି*    ୨୬ ଅକ୍ଟୋବର ୧୯୬୯
୍

## ସୁଭାଷ ଚନ୍ଦ୍ର

ଦେଶର ଅପମାନ ଦେଖି ଯାହାର ମନ,
ବକ୍ଷ ତଳେ ନିଆଁ ହଳିଲା ହାଉ ହାଉ,
ଆକାଶପରେ ଉଡି, ଜଳଧି ଜଳେ ବୁଡି
ଫଉଜ୍ ଗଢିବାକୁ ବୁଲିଲା ଦେଶ ବନ୍ଧୁ,
ସେ ନୁହେଁ ମାଟିଗୋଡି, ଏ ଦେଶ ଅଛି ଗଢି,
କାହିଁ ଗୋ କାହିଁ ସିଏ, ଆଜି ତ ନାହିଁ ଆଉ !-୧

ସୁଦୂର ସିଙ୍ଗାପୁରୁ ଯାହାର କଥା ଦିନେ
କୋଟି ଜନତା ମନେ ଆଣିଲା କମ୍ପନ,
ବର୍ମା ପ୍ରାଙ୍ଗଣେ ଶୁଭିଲା ଘନେ ଘନେ
ଭାରତ ଜନନୀର ମୁକ୍ତି-ଆହ୍ୱାନ,
ବିଦେଶୀ ସରକାର ଥରିଲା ଥର ଥର
ସେ ଦିନ ଦେଖି ଯା'ର ବଜ୍ର-ଟାଣ ବାହୁ,
ସିଏ ତ ନୁହେଁ ସାନ, ରଖିଲା ଜାତି-ମାନ,
କାହିଁ ଗୋ କାହିଁ ସିଏ, ଆଜି ତ ନାହିଁ ଆଉ !-୨

ସେ ଦିନ ମଣିପୁର ଦେଖିଲା ଫରଫର
ଉଡେ ତ୍ରିରଙ୍ଗ ବାନା ଉଚ୍ଚେ ଟେକି ଶିର,
ସେହି ପତାକା ପାଇଁ ଅଛନ୍ତି ଜୀବ ଦେଇ
ବୀର ପୁରୁଷ କେତେ ଢାଳି ରକତ ଧାର |
ଯାହାର ଡାକରାରେ ମାତିଲେ ଏତେ ବୀରେ ,
କିଏ ସେ କହିବ ଗୋ କେତେ ତାହାର ଭାଉ ?
କାହିଁ ଗୋ କାହିଁ ସିଏ ? ଏହି ତ ଆଜି ଯାଏ
ଦୀପ୍ତ ମୁଖ ତାର ଝଲସେ ଦାଉ ଦାଉ |-୩|

ସେ ଏକ ସୁନା ପୁଅ ଭାରତ ଜନନୀର ,
ମୂଲ ତାହାର ଏକା ଜନନୀ ଲୁହଧାର |
ପଚାଶ କୋଟି ଜନ ହୃଦୟେ ଅଛି ସିଏ
ଥିବ ଗୋ ଚିରଦିନ, ଅଛି ତ ଆଜି ଯାଏ |      -୪

*ଲଳାଟେନ୍ଦୁ କବି*          ୨୭ ଫେବୃୟରୀ ୧୯୬୯

**ରାତ୍ରି**

ଲକ୍ଷ-ଯୁଗ ଗମ୍ଭୀରତା ଘେନି
ତୁମେ ଅବା ଆସ ନିତି ନିତି,
ଦିବସର ଯାବତୀୟ ଗ୍ଲାନି
ନିମିଷକେ ବିହର ରଜନୀ,
ତେଣୁ ଘେନ ବିନମ୍ର ପ୍ରଣତି |  -୧

ଜାଗତିକ ନିର୍ଯାତନାରାଶି
ତୁମ ସ୍ପର୍ଶେ ଲଭେ ବିସ୍ମରଣ,
ତାରାମାଳ ଉଠିଲେ ତରାସି
ଦିଗ୍-ବିଦିଗ ଯାଇ ତୁମେ ଗ୍ରାସି
ଗାଅ ଯେଣୁ ଗମ୍ଭୀର ଦର୍ଶନ |      -୨

ଆଜି ପୁଣି କି ବାରତା ସଙ୍ଗେ
କୁହ କୁହ ଆଣିଛ ଶର୍ବରୀ,
ମଜ୍ଜି ସେହି ମହା ଚିନ୍ତା ରଙ୍ଗେ
ନିଦ୍ରା ଯିବି ତୁମରି ଉତ୍ସଙ୍ଗେ
ସ୍ନେହେ ମୋତେ ନେବ ତୁମେ ତୋଳି | -୩

*ଲଳାଟେନ୍ଦୁ କବି*   ୨୫ ଜାନୁୟାରୀ ୧୯୭୧

## ଶୂନ୍ୟ-ପ୍ରାଣ

ରୁକ୍ଷ ଏଇ ପଥର ଭିତରେ ଖୋଜିଲି ଅନେକ
ଦିନ ମାସ ବର୍ଷ ବର୍ଷ ଧରି ମଧୁର ସେ ଡାକ
କିନ୍ତୁ ହେ ପଥର
ତୁମ ମୁଖୁ ସ୍ଫୁରିଲାନି ସ୍ୱର ||          -୧-

ମୃତ୍ୟୁମୟ ଅଭେଦ୍ୟ ଅନ୍ଧାରେ ଭୁଲି ଆପଣାକୁ
ହଜିଲା ସେ ଅତୀତକୁ ଝୁରି ଫଟାଇଲି ବୁକୁ
ବୁହାଇଲି ଲୁହ
ଆତଙ୍କିତେ ଉଦ୍ଗାରିଲି କୋହ ||          -୨-

ଶୁଣିଲନି ପଥର ପ୍ରତିମା ବୁଝିଲନି କିଛି
ମୁ ତ କିନ୍ତୁ ପାରୁ ନାହିଁ ଜମା ହୃଦୟରୁ ପୋଛି
ଅତୀତର ଦାଗ
ମାନ-ଅଭିମାନ ଅନୁରାଗ ||          -୩-

ଭ୍ରାନ୍ତିମୟ କଳ୍ପନା ଭିତରେ ଚମକେ ନିରେଖି
ଭାଷାମୟ ଅଧର-କମ୍ପନେ ଛଳ ଛଳ ଆଖି
ଦିଅ ବା ଇସାରା
କମ୍ପି ଉଠେ ଶରୀରଟା ସାରା ||          -୪-

ମନ୍ତ୍ର-ମୁଗ୍ଧ ଡାକି ଉଠେ ମୁଁ ଗୋ ନାମ ତାର ଧରି
ତୁମେ କିନ୍ତୁ ଦିଅନା ଉତ୍ତର, ଭୟେ ଉଠେ ଥରି
ପ୍ରତିଧ୍ୱନି ମୋର
ସ୍ତବ୍ଧ-ପ୍ରାଣେ ଶୁଣେ ବାରମ୍ବାର ||            -୫-

ମୁହୂର୍ତ୍ତକେ ଫେରିଲେ ଚେତନା ପାରେ ମୁଁ ଗୋ ବୁଝି
ତୁମ ପରି ସହସ୍ର ପ୍ରତିମା ପାରିବି ମୁଁ ସୃଜି
କିନ୍ତୁ ହେ ପାଷାଣ,
ଶୁଷ୍କ ତୁମେ ଥିବ, ଶୂନ୍ୟ-ପ୍ରାଣ ||            -୬-

ଯେ ଆଶାରେ ଗଢ଼ିଲି ତୁମକୁ ରୂପ ଦେଇ ତା'ର
ତୁମେ ତାହା ପାରିବନି ଦେଇ ମୂକ ଅବତାର -
ନିଷ୍ପନ୍ଦ ମୂରତି,
ମମତାର ନାହିଁ ଏଠି ସ୍ଥିତି ||            -୭-

*ଲଲାଟେନ୍ଦୁ କବି*        ୨୬ ଜୁଲାଇ ୧୯୭୫

**କ୍ଷଣିକ ପ୍ରେମ**

ଆସିଲା ବସନ୍ତ ଅବା ଶୁଭ ଲଗନରେ
ଖେଳିଗଲା ଯଉବନ ଫୁଲରେ ପତରେ
ଏ ଜୀବନ ଉପବନେ ବାଜିଲା କି ପ୍ରତିକ୍ଷଣେ
ଅମୃତ ସଙ୍ଗୀତ ଧାରା
ଚମକାଇ ବିଶ୍ୱସାରା
ଜଗାଇ ପ୍ରେମ ବାସନା ଅନ୍ତରେ ଅନ୍ତରେ ||      -୧-

ଏମିତି ବେଳାରେ ସହି ମୋ ପାଖରେ ଦେଖା ଦେଇ
କିଣି ନେଲୁ ମନ ମୋର
ହଜାଇଲି ମୋ ସୀତାର
ବାସନା-ବୋଳା ତୋହର ଚକ୍ରବାକୀ-ସୁରେ ||   -୨-

ସପନ ରାଇଜେ ସଖି ମନ ମୋ ରହିଲା ଲାଖି
ତୋ ହସର ମଧୁ ରାଶି
ପାନ କଲି ଦିବାନିଶି
ତୋ ପାଶରେ ବସି ପ୍ରିୟା ଚାନ୍ଦିନୀ ଲହରେ || -୩-

ଏ ସପନେ ତୋ' ଭଳି ଯାଇଥିଲି ସତେ ଭୁଲି
ଦି' ଦିନିଆଁ ମାୟା ଇଏ
ଆଜି ଏ ତ କାଲି ସିଏ
ତୁଟାଇ ଏ ମିଛ ମାୟା ମିଶିବା ମାଟିରେ ||    -୪-

ସହସା ଆଲୋକ-ପାତେ ଚମକି ଦେଖିଲି
ଜୀବନଟା ଶୂନ୍ୟ ଏକ ସାହାରାର ବାଲି
ଟିକିଏ ବୋଲି ତ କାହିଁ ନାହିଁ ଯେ ବିଶ୍ରାମ ଭୂଇଁ
ମମତା ଯାଉଛି ମରି
ଭାଗ୍ୟ ତାର ଅନୁସରି
ଶ୍ରମମୟ ଜୀବନର ରୁକ୍ଷ ଶୂନ୍ୟତାରେ ||    -୫-

*ଲଳାଟେନ୍ଦୁ କବି* -   ୧୯୭୬

## କ୍ଷଣିକ ଚିନ୍ତା

ସେହି ଯେ ମାଟିର ପରେ ଲଭିଲି ଜନମ, ଯାହା କୋଳେ ହେଲି ଏତେ
ବଡ,
ସେ ମାଟିର ପାଦସେବା ହେଉ ମୋ ଧରମ, ଆସୁ ପଛେ ଯେତେ ଝଞ୍ଜା
ଝଡ |
ଦେଖାଇବି ପ୍ରୀତି ତାକୁ କରମେ କରମେ -
ଏହି ଭାବ ଥାଉ ସଦା ମରମେ ମରମେ | :-୧

ଯେଉଁ ମାଟି ପରେ ମୋର ସୁହାସ-ଲୋତକ ଖେଳିଗଲା ଦିବସ ବରଷ,
ଯାହାର ପ୍ରଭାତ, ସନ୍ଧ୍ୟା ଲେଖିଲା ଚମକ, ସୁଗଭୀର ନିଶୀଥ ପରଶ
ସଞ୍ଚାରିଲା ମନେ ପ୍ରାଣେ ବିଶ୍ୱପ୍ରେମ-ଧାରା,
ସେ ମାଟି ଆରାଧ୍ୟ ହେଉ ଏ ଜୀବନ ସାରା |:-୨

'ତାହାରି ନଗର, ପଲ୍ଲୀ, ବିପୁଳ ଜନତା, ନ୍ୟାୟ, ସତ୍ୟ, ଧର୍ମର ଉଦ୍ଦେଶେ
ଲଢିବି' - ଭାଳିଲେ, ତେଜି ଜୀବନ-ମମତା, ମହାବାଣୀ ପଡଇ ମାନସେ:
"ବିଶ୍ୱ ପଛେ ଭାସିଯାଉ ଆକୁଳ କ୍ରନ୍ଦନେ,
ଏକାକୀ ବସିବି ମୁହିଁ କର୍ତ୍ତବ୍ୟ ସାଧନେ |" :-୩

ଲଲଟେନ୍ଦୁ କବି ଅକ୍ଟୋବର – ୧୯୬୯ ୍

## ଋଣଂ କୃତ୍ୱା...

କରିଛି ଋଣ ଯେତେ ଜୀବନେ ଏ ଯାବତ
ପାରିବି ନାହିଁ ଶୁଝି - ଏତିକି ଜାଣେ ସତ || :-୧-

ଜନନୀ, ପିତା, ଗୁରୁଜନଙ୍କଠାରୁ ଶିଖି
ପାଇଛି ହେତୁ ମୋର, ପାରୁଛି ପଢି ଲେଖି  || :-୨-

ପୂରୁବ ପୁରୁଷଙ୍କପାଖରୁ ଆଦରଶ
ଟିକିଏ ପାଇ ଆଜି ତୋଳିଛି ବିଶ୍ୱାସ   ||  :-୩-

ସିଏ ତ ଦେଇ ଗଲେ ମାଗିଲେ ନାହିଁ କିଛି,
ଉତ୍ତର ଜନେ କିଛି ଦେବାକୁ ମନାସିଛି ||   :-୪-

ପାରୁନି ଶୁଝି କିନ୍ତୁ କାଣିଚେ ଋଣଭାର,
ମିଛ ସେ ଆଶାଟି ମୋ ଜୀବନ ସମ୍ଭାର  || :-୫-
24 July 1984

ପାରିବି ପରିଶୋଧ କରି କି କିଞ୍ଚିତ ?
ମଣନ୍ତି କଳି ପାନ ଘୃତ କି ଅମୃତ  ||        :-୬-
ଲଲାଟେନ୍ଦୁ କବି        30 August 2014

## ଦୁଇ ଦିଗ

ତୁମେ ସିନା ନାଚି ଉଠ ଦେଖି ସାତରଙ୍ଗ ଇନ୍ଦ୍ରଧନୁ କାନ୍ତି
ମୁଁ ଦେଖୁଛି ତାରାରେ ତାରାରେ ଏ ଆଖିର ସାତକୋଟି ଭ୍ରାନ୍ତି ||

ପୂର୍ବାକାଶ ପାଟଳ ବରଣେ ହସି ଉଠେ ପାହିଲେ ରଜନୀ,
ଧୀରେ ଧୀରେ ହସେ ବସୁମତୀ ମୁଖୁ ଫିଙ୍ଗି କଳାଲୁଗା କାନି,
ସେତେବେଳେ କଳ୍ପନାରେ ତୁମ ଖେଳେ କେତେ ପ୍ରେମର ତରଙ୍ଗ
ମୋ ଆଖିରେ ମିଛ କିନ୍ତୁ ସବୁ, ନୟନର ଭୁଲାଣିଆଁ ରଙ୍ଗ ||

ବରଷାର ନବ ଆଗମନେ ତୁମେ ଯେବେ ହୁଅ ଆତ୍ମହରା
ମୁଁ ତ ଦେଖେ ସ୍ତବ୍ଧ ଅବନୀର ଅବିରାମ୍ ଲୋତକର ଧାରା ||

ଉଚ୍ଚାକାଶେ ଉଡିଲେ ବିହଙ୍ଗ ତୁମେ ଚାହଁ ଉଡିବାକୁ ଖାଲି,
କୁହ "ସତେ ନିମିଷକ ଲାଗି ସମସ୍ତଙ୍କୁ ଯାଆନ୍ତି କି ଭୁଲି!"
କଳ୍ପନାରେ ଭାଙ୍ଗ ସିନା ତୁମେ ଆଶଙ୍କାର ଅସଂଖ୍ୟ ସହରୀ,
ମୋ ଆଖିରେ ସଂସାର ସାଗରେ କଳ୍ପନାଟି ଅସହାୟ ତରୀ ||

ତୁମ ଲାଗି ସୃଷ୍ଟି ପ୍ରତି ରନ୍ଧ୍ରେ ପୂରିଅଛି ଅସଂଖ୍ୟ ପୁଲକ,
ମୋ ପାଖରେ ପ୍ରତିଟି ନିମିଷ କ୍ଳାନ୍ତିକର ସାଧନା ଅନେକ ||
ଚାଲିଅଛ ତୁମ ପଥେ ତୁମେ, ମୁଁ ପାଇଛି ପଥ ମୋର ଖୋଜି,
ଠିକ୍ କିଏ ଭୁଲ୍ କିଏ କୁହ, କୁହ ମୁଁ ଯେ ପାରୁନାହିଁ ବୁଝି ||

*ଲଲାଟେନ୍ଦୁ କବି*   ୨୮ ମ ଇ ୧୯୭୫

## ସେ କବିତା ମରିବନି କେବେ

ମୋ ଆଖିର ଲୁହଧାରା ତୁମ ବକ୍ଷେ ଟଣିଲା ଯେ ରେଖା
କିମ୍ବଦନ୍ତୀ ହେବନି ତା' ଇତିହାସେ ନ ରହିବ ଲେଖା |   -୧-

ମୋ ଅନ୍ତର ବ୍ୟାକୁଳତା ଛୁଇଁଲା ଯେ ହୃଦୟ ତୁମରି
ଜାଣିବେନି କେହି ତୁମ ଅଶ୍ରୁ ତହୁଁ ଝରିଲା କିପରି |   -୨-

ତୁମ ପାଇଁ ବସି ଖାଲି ରଚିଯିବି ଅସଂଖ୍ୟ କବିତା,
ଯିବା ଆମେ, ରହିବ ସେ - ମିଳନର ଅବିନାଶୀ ଚିତା |   -୩-

ସେ କବିତା ଗାଇବ ଯା' ନ ପାରିବ ପୋଛି ତା' ସମୟ
ଆମ ପ୍ରେତବନ ପରେ ବହୁ ଯେତେ ବିସ୍ମୃତ ମଳୟ |          -୪-

*ଲଲାଟେନ୍ଦୁ କବି*          ୨୨ ଅପ୍ରିଲ ୧୯୭୧

## ଆବେଦନ

ତୁମେ ଯେବେ ମୁକ୍ତ ନଭେ
ବିହରିବ ଚଞ୍ଚଳ ସମୀରେ
ଜୀବନର ଆବେଦନ
ଗୁଞ୍ଜରିବ ଏ ଭୁଇଁରୁ
ଜୀର୍ଣ୍ଣ ମୋ ସୀତାରେ |  -୧

କ୍ଷୀଣ ସେ ସୀତାର ସ୍ୱନ
କ୍ଷୀଣତର ତୋଳିବ ସ୍ପନ୍ଦନ
ତୁମରି ହୃଦୟ ତଳେ,
ତେବେ ସଖି, ଚକ୍ଷୁ-ଉନ୍ମୀଳନ
କରି ଥରେ, କହ ସତ
ଦୃଷ୍ଟି ତବ ନିମେଷ ସକାଶେ
ନିବେଦିବ ଆତୁରେ ଗୋ
ପ୍ରାଣ ଭରି ମୋହରି ଉଦ୍ଦେଶେ ?     -୨

ହାତ ଠାରି କହିବ ତ ମୋତେ,
"ଆସ ହେ, ବିହାର ଏଥି
ବିରଚିବି ତୁମରି ସଙ୍ଗତେ!"     -୩

ମୁଁ କିନ୍ତୁ କହିବି ସଖି ,
"ଏଥିଲାଗି ନାହିଁ ଗୋ ଶକତି,
ତୁମଲାଗି ସୀତାର ମୋ
କାନ୍ଦିଉଠୁ, ତହିଁ ମୋ ତୃପତି !" -୪

ସେତେବେଳେ ଚାହଁ ଯଦି
ମୋ ଉପରେ ଅଭିମାନ ଭରେ,
ଜୀବନର ଆବେଦନ
ଝଙ୍କାରିବି ଖାଲି,
ଅସହାୟେ, ଜୀର୍ଣ୍ଣ ମୋ ସୀତାରେ |-୫

*ଲଳାଟେନ୍ଦୁ କବି* ୨୫ ଜାନୁୟାଏରୀ ୧୯୭୧

## ଅମ୍ବୁଦର ଇତି କଥା

ଆର୍ତ୍ତନାଦ କଲି ଯେବେ ଅନମ୍ବରେ ଅନନ୍ତ ଆତୁରେ
ଡାକିଲା ଧରଣୀ କିବା ତା' ଜୀବନ ରୁଦ୍ଧ ହାହାକାରେ
ସହସା ମୁଁ ଚାହିଁଲି ଚମକି
ନିରନ୍ଧ୍ର ଅନ୍ଧାରେ କିନ୍ତୁ କାହିଁ କିଛି ନ ପାରିଲି ଦେଖି | -୧

ମନ ମୋର ହେଲା ଖାଲି ଧରା ତଳେ ଝରିବି କିପରି
ବନବିଥୀ ଡଘନଘନ ଡାକେ "ବନ୍ଧୁ ଆସ ଅବତରି
ଅମା ଯାଇ ପାହିଲେ ରଜନୀ
ପ୍ରଖର ତପନ ଜାଳେ ମୁଁ ଯେ ଆଉ ବଞ୍ଚି ପାରିବିନି | -୨

ଝରିଗଲି ଉନ୍ମାଦେ , ଧରାତଳେ ଛୁଟିଲା ପୁଲକ
ବିକଶିତ ଫୁଲ-ପର୍ଣ୍ଣେ ଯଉବନ ଖେଳିଲା ଅନେକ
ଥରି ଥରି ମୌସୁମୀ ବହିଲା
କହିଗଲା ବହୁ ଦିନୁ ଯାହା ସତେ କହିବାର ଥିଲା ।        -୩

ବହି ତହୁଁ ଝରଝର ମିଶିଗଲି ସାଗର ବୁକୁରେ
ଯଉବନୀ ଗଛଲତା ରହିବାକୁ କହିଲେନି ଥରେ
ଉର୍ଦ୍ଧ୍ୱେ ଚାହିଁ ଭରା ଯଉବନେ
ହସୁଥିଲେ ସୂର୍ଯ୍ୟ-ଚନ୍ଦ୍ର-ତାରକାରେ ଅନନ୍ତ ଗଗନେ ।      -୪

*ଲଲାଟେନ୍ଦୁ କବି*          ୧୯୭୧

## ଆଦିମ-ବାସନା

ତୁମେ ସତେ ପାରୁ ନାହଁ ବୁଝି ?
ବୁଝିବା ତ ନିହାତି ସହଜ;
ବୁଝି ଅବା କରୁଛ ଛଳନା,
ଭୟ କି ବା ପାଉଅଛ ଲାଜ !        -୧-

ତୁମକୁ ଗୋ ଦେଖିଦେଲେ ଥରେ
ମୋ ଆଖିରେ ଖେଳେ ଉନ୍ମାଦନା !
ତୁମର କି ଜାଗେ ନା ଅନ୍ତରେ
ଥରେ ସେହି ଆଦିମ ବାସନା ? ||    -୨-

ହେଲେ ହେଉ ମିଛ ଏ ମିଳନ
ନିମିଷକ ଆବେଶର ମାୟା,
ସକଳ ତ ଅନିତ୍ୟ ସଂସାରେ,
ଜୀବନଟା ସପନର ଛାୟା | ||       -୩-

ମୃତ୍ୟୁମୟ ଅନିତ୍ୟ ଜଗତେ
ମିଳନଟା କ୍ଷୁଦ୍ର ଅନିତ୍ୟତା,
କ୍ଷୁଦ୍ର ଏଇ ଜୀବନ ଚାହୁଁଛି
ତା' ଭିତରେ ଭୁଲିବାକୁ ସତ୍ତା ||          -୪-

ଆସ ଆସ ବେଳ ଥାଉଁ ଥାଉଁ
ମିଳନରେ ଯିବା ସବୁ ଭୁଲି,
ଯଉବନ ଚାଲିଗଲେ ଥରେ
ଆସେ ନାହିଁ, ଆସିବନି ଫେରି | ||  -୫-

*ଲଲାଟେନ୍ଦୁ କବି*     ୦୩ ଜୁଲାଇ ୧୯୭୫          ହରିଶରଣମ୍

**ସ୍ମୃତିର କବର ତଳେ**

ଲେଖିଯିବି ଖାଲି ମୁଁ ତ ଅଗଣନ ସଙ୍ଗୀତ ଏକା ଏକା ବସି ରେ
ମାନିବିନି ଖରା ତରା ଶାବଣର ବାରିଧାରା କି ବା ହିମ ଶିଶିରେ
ମାନିବିନି ଦିବସ କି ରଜନୀ
ପ୍ରେମର ସଙ୍ଗୀତ ଖାଲି ଲେଖିବାକୁ ଯିବି ଚାଲି ଅବିରତେ ଲେଖନୀ ||  -
୧ -

ଅଭୁଲା ପ୍ରୀତିର ଦାଗ ହଜିଲା ସେ ଅନୁରାଗ ରଖିଛି ଗୋ ଯତନେ
ସ୍ମୃତିର କବର ତଳେ ସିକ୍ତ କରି ନେତ୍ର-ନୀରେ ଅତିଶୟ ଗୋପନେ
ପାରିବେନି ଦେଖି ତାକୁ କେହି ତ
ନିରେଖି ମୁଁ ଏକା ଏକା ବିତାଇବି ଲୁହ ମଖା ନିର୍ଜନ ନିଶୀଥ ||        -
୨ -

ରାତି ନ ଯାଉଣୁ ବିତି କବର ଦେବି ଗୋ ପୋତି, ପୋଛି ଦେବି ଲୋତକ;
ପ୍ରଭାତ ଯାଆନ୍ତେ ଖେଳି ହସିବି ମୁଁ ମନ ଖୋଲି, ହସେଇବି ଅନେକ;
ରଚି ଯିବି କବିତାର ମାଳିକା,
ବିରହ ନ ଥିବ ଜମା, ଲେଖି ଯିବି ଅନୁପମା ମିଳନର ଗୀତିକା ||        -
୩-

*ଲଳାଟେନ୍ଦୁ କବି ୦୭*        ଫେବୃଆରୀ ୧୯୭୬   ୍

**ଶୂନ୍ୟ ପାଦପ ତଳେ**

ଶୂନ୍ୟ ପାଦପ ତଳେ
କଳରତ ବିହଗର ମେଳେ
ଆସ ମୋ ସାଥେ ବସିବ କିଏ,
ଏ ଯେ ଶତ୍ରୁବିହୀନ; ରୌଦ୍ରତପ୍ତ ସମୀରଣ ଏଠି ବହେ ||-୧

ତ୍ୟକ୍ତ-ବିଭବ ମୁକ୍ତ ଜୀବନ ଆଶେ,
ତୁଷ୍ଟ-ମନସ ଲଭି କିଞ୍ଚିତ ପାଶେ,
ଆସ ଏଇପରି ଅଛ କିଏ,
ଏଠି ବନ୍ଧୁ-ମିଳନେ ମୁଗ୍ଧ, ମଧୁର ସମୀରଣ ବହି ଯାଏ ||-୨

*ଲଳାଟେନ୍ଦୁ କବି*        ୧୯୬୮

## ବିଚ୍ଛେଦ

ଆପଣାର ବୋଲି ଯାହାକୁ କହିଲି ସିଏ ତ ବୁଝିଲା ନାହିଁ ,
ଜୀବନ ସରାଗ ଅରାପିଲି ଯେ ତା ମରମେ ବାଜିଲା ନାହିଁ !

ସିଏ ତ ଦେଖିଲା ଅନ୍ତର ତଳେ ବିଷ !
ମାୟାବନ୍ଧନ-ଅନୁଭୂତି ଆଶ୍ୱାସ
ଆଉ ଏବେ କାହା ପାଇଁ ?

ସରଳା ତଟିନୀ ଧୀର ଉନ୍ମାଦେ ପଥେ ତା'ର ଯିବ ବହି
ଦୀପ୍ତ ଗରବେ ଫୁଟିବ ସୁମନ , କିଛି ନ ଜାଣିବେ କେହି ,
କିଏ ସେ ମାତର କହୁଥିବ କାନେ କାନେ,
ତରଳ ରାଗରେ ସମୀରଣ କମ୍ପନେ,
"ନାହିଁ ନାହିଁ ସେ ତ ନାହିଁ" |

ଲଲାଟେନ୍ଦୁ କବି ୧୮ ନିଭେମ୍ବର ୧୯୬୯

## କବିତା

କବିତା ଗୋ ତବ ଚଞ୍ଚଳ ପଦ ନୂପୁର ମାଳା
ରୁଣୁ ଝୁଣୁ ଝୁଣୁ ଝଙ୍କାର ଯେବେ ତୋଳେ
ଲକ୍ଷ ଜୀବନେ ଯୌବନ ରଚେ ଖେଳା
କଳ୍ପନା ଭରା ଆତୁର ନୟନ ଜଳେ || -୧-

ହଜିଲା ସେ କେଉଁ ସୁଦୂର ଅତୀତ ରାଜ୍ୟେ ପୁଣି
ତୁମରି ସ୍ରୋତରେ ଭସିଯାଇ କିଏ ଉଭା
ବିଦ୍ୟୁତ୍ ସମ କ୍ଷିପ୍ର ତୁମର ନୟନ ଠାଣି
ଦେଖି ଚ଼ଞ୍ଚଳ ବାଳକ ବୃଦ୍ଧ ଯୁବା ||     -୨-

ସକାଳ ସଞ୍ଜେ ପକ୍ଷୀର ମଧୁ-ତରଳ ଗାନେ
ଶିଳ୍ପୀ ରୂପରେ କବିତା ଗୋ ତୁମ ଦେଖା,
ବାସର ହସଇ ଗୋପଳ ବାଳକ ବଂଶୀ ତାନେ
କାନିରେ ତୁମର ଶିଶୁର ନିଦ୍ରା ରଖା ||  -୩-

ନିର୍ଜନ ମୁଁ ବା ମରୁ ପ୍ରାନ୍ତର ପଥିକ ଏକ
ଅସୀମ ଜୀବନ-ପଥେ ନାହିଁ କେହି ସାଥୀ,
ଶୂନ୍ୟ କୁଟୀରେ ହୃଦୟ ଶୂନ୍ୟ ଲାଗେ ଅନେକ,
ଚଉପାଶେ ଖାଲି ରୁକ୍ଷ ପ୍ରାଚୀର ଛାତି ||     -୪-

ତୁମେ ଗୋ କବିତା ଅଜାଣତେ ମୋର ଉଠିଲେ ହସି
ଉଦ୍ୟାନ ସମ ହସେ ଏ ରୁଦ୍ଧ କାରା
ଝରୁ ହେ ତୁମରି ଅଶିଷ-ପୀୟୂଷ ରାଶି କି ରାଶି
ସଙ୍ଗୀତମୟ ହେଉ ଏ ଜୀବନ ସାରା ||     -୫-

*ଲଲାଟେନ୍ଦୁ କବି*   ୨୭ ନଭେମ୍ବର ୧୯୭୫

### ବାଲ୍ୟ ସାଥୀ

ସେଦିନୁ ଆଜିଯା ଏ ଗଲାଣି ବିତି ଆହା କେତେ ବରଷ,
କଅଁଳି ଥର ଥର ମଲାଣି କେତେଥର ସବୁଜ ଘାସ |     -୧

ସେଦିନୁ ନିତି ନିତି ଉଇଁଣ ଦିନପତି, ବିମଳ ଶଶୀ
ତାରକା ସାଥେ ମିଳି ଅନେକ ଥର ମିଳି ଗଲେଣି ହସି | -୨

ଫୁଟିଲେ କେତେ ଫୁଲ; ଭଅଁର ଦଳଦଳ ଆସି ତା' ପାଶେ,
ଗଲେଣି ଦୂରେ ଚଳି ମଧୁର ଗୀତ ତୋଳି କେତେ ସରସେ | -୩

କେତେ ଯେ ସାଙ୍ଗସାଥୀ ଆପଣା ହୋଇ ଅତି ହେଲେଣି ପର;
ସବୁ ତ କ୍ଷଣିକ ଲୋ, କାହାକୁ ଏ ଜଗତେ ବୋଲିବା ସ୍ଥିର ? -୪

ତୁ ବି ତ ଏହି ପରି ସୁଖ-ସୋହାଗ ଧରି ହନମି ଥିଲୁ,
ଫୁଲଟେ ପରି ଫୁଟି ଦି'ଦିନେ ତଳେ ଲୋଟି କିଆଁ ପଡ଼ିଲୁ ? -୫

ମାଟିର ଦେହ ତୋର ମଶାଣି ମାଟି ତଳ ଲଭିଲା ସିନା,
ତୋର ସେ ସ୍ମୃତି ଟିକେ ମୋ ସାଥେ ଆଜିଯାକେ ରହିଛି ଅନା | -୬

ଫୁଲ ତ ଫୁଟି ଝରେ ଘାସ ତ ଉଠି ମରେ ନ ମରେ ସ୍ମୃତି,
ମରମ ତଳେ ତଳେ ଅତୀତ କାଳେ କାଳେ ଉଙ୍କେଳେ ଅତି ! -୭

ଦିଶ ଇ ନବ ନବ ସେଦିନ ଶଇଶବ ଅତୀତ ଛବି,
କେମିତି ସେ ପ୍ରଭାତେ ଆମକୁ ଏକାସାଥେ ଦେଖିଲେ ରବି | -୮

ଗୋଟିକ ପରେ ଆନ ସେଦିନ କଥାମାନ ମନରେ ପଡ଼େ,
ପାହାଡ ତଳେ ଦେଖି ଆପଣା ଛାଇଟିକି ଡରିଲୁ କେତେ | -୯

ଟୁକୁରା କନା ଖଣ୍ଡେ ପାଇଲେ ପରା ଦାଣ୍ଡେ ସାଉଁଟୁ ଥିଲୁ,
କାହାକୁ ପୁଅ କରି କାହାକୁ ଝିଅଁ କରି ସଜେଇ ଦେଲୁ | -୧୦

ଛିଡା କନା ଖଣ୍ଡିଏ ପାଇ କେତେ ଆଗ୍ରହେ ଉଠଉ ତଳୁ.
ଠାକୁର ରଖୁ ତହିଁ ଧୂଳିରେ ଯେବେ କାହିଁ ଦେଉଳ ତୋଳୁ | -୧୧

ତା ପର ସକାଳରେ ଦେଖିଲେ ଆଗ ଯାଇ ଦେଉଳ ଆଡେ,
ଭାଙ୍ଗିଥାଏ ମନ୍ଦିର ପଡିଥାନ୍ତି ଠାକୁର ପଥର କଡେ | -୧୨

କାଠର ପିଢାଗୋଟି ପୁଅ ବୋଲି ସାଉଁଟି ଧରୁ ଯତନେ,
ଏ ମିଛ ଖେଳଟାରେ ଆମେ ତ ଦେଖିଲୁ ରେ ସୁଖ ରତନେ | -୧୩

ନଡିଆ ଷଢେଇରେ ବାଲିରେ ପାଣି ଦେଇ ରାନ୍ଧିଲୁ ଭାତ,
ପରଷି ଭାତ ଥାଳ ଭାଇ ବୋଲି ମୋହର ଧୋଇଲୁ ହାତ | -୧୪

ସେତିକି ବେଳେ ପରା ମୁହଁକୁ ଚାହିଁ ତୋର ଥିଲି ମୁଁ ହସି,
ଆହା କି ଶରଧାରେ ମୋ ଦେହେ ଧୀରେଧୀରେ ଦେଲୁ ଆଉଁସି | -୧୫

ଖାଇବି ନାହିଁ ବୋଲି କେତେ ମୁଁ ଅଳି କଲି, କରିଲି ମାନ,
କଅଁଳ ବିଷାଦିତ ତୋ ଚାହାଣିରେ ସତ ହେଲି ଅଧୀନ | -୧୬

ଫୁଟିଲେ ଫୁଲଟିଏ ପତର ଗହଳରେ ଦେଖାଉ ମୋତେ --
ସେ ସବୁ ଦୃଶ୍ୟରାଶି ଥରେ ଥରେ ବିକଶି ଦିଶି ଚିତ୍ତେ | -୧୭

ପ୍ରଜାପତିଟି ପଛେ ଧାଇଁ ଦଉଡି ମିଛେ ଥକିଲେ ପାଦ,
ହାତରେ ହାତ ରଖି, ଏକ ଅପରେ ଦେଖି ଭୁଲୁ ବିଷାଦ | -୧୮

କେତେ ଯେ ମିଛ ମାୟା ଏ କ୍ଷୁଦ୍ର ମାଟି କାୟା ଥିଲା ଘୋଡାଇ,
କିଏ ସେ ଦେଖି ଆମ ଏଡିକି ମେଳ ତୋତେ ନେଲା ଛଡାଇ ? -୧୯

କେତେଟା ବରଷରେ କି ବା ତୁ ଜାଣିଥିଲୁ ଜଗତ କଥା,
ସେତିକିରେ ତ ତୋର ଡାକରା ଘେନି ଗଲୁ, ଦେଇ କି ବ୍ୟଥା | -୨୦

ମୋ ପାଶୁ ଯେଉଁ ଦିନ ଚାଲିଗଲୁ ପ୍ରଥମ, ଜାଣି ନ ଥିଲି,
ଯାଇଛୁ ରାଗ କରି ଆସିବୁ ନାହିଁ ଫେରି କଦାପି ବୋଲି | -୨୧

ବହୁତ ଦିନଯାଏ ଖେଳରେ ଏକା ଏକା ଲାଗିଲା ଭାରି,
ହେଲେ ହେଁ କାହିଁ ତୁ ତ ଆସିଲୁ ନାହିଁ ଫେରି ଗଲୁ ଯେ ଚାଲି | -୨୨

ଭାଳିଲି ତୋର କଥା ନୀରବେ ପୋତି ମଥା ସଞ୍ଜ ଅନ୍ଧାରେ,
କେ କେତେ କଥା କହି ଦେଇଥିଲେ ଭୁଲାଇ ମୋତେ ତୋହରେ | -୨୩

ସେଦିନୁ ଭୁଲିଥିଲି ତୋହର କଥା, କିଛି ନ ଥିଲା ମନେ,
କେବେ କି ଭାବେ ପୁଣି ପଡିଲା ମନେ ସବୁ ମୁଁ ତ ନ ଜାଣେ | -୨୪

ଆହୁରୀ ମନେ ପଡେ ଦେଖି ତୋ ଶମଶାନ ଜନନୀ ତୋର,
"କୁନି ଲୋ" ବୋଲି ଦିନେ କାନ୍ଦିଲେ ଅଭିମାନେ ହୋଇ ଅଧୀର | -୨୫

ଖାଲି ମୁଁ ଚାହିଁଥିଲି ତୋ ମାଆ ମୁହଁକୁ ଲୋ କହିନି କିଛି;
ମରମେ କାନ୍ଦୁଥିଲି ମୁଁ ବି ତ, କି କହନ୍ତି, କହ ଆଶ୍ୱାସି ? -୨୬

ମାଟିର ଦେହ ତୋର ମାଟିରେ ମିଶିଥିଲା ସେଇଠି ପରା,
ସେ ମାଟି ମୂରତିକି ପୂଜନ୍ତି ଲୋକେ ପୁଣି ମୂଳକ ସାରା | -୨୭

କିଏସେ ଜାଣେ ତହିଁ ଅଛନ୍ତି ଅବା ନାହିଁ ଦିଅଁ-ଦେବତା ?
ହେଲେ ହେଁ ପବିତ୍ର ସେ, ଜଳିଛି ଯେଣୁ ତହିଁ ସେନେହ-ଚିତା | -୨୮

*ଲାଟେନ୍ଦୁ କବି ୧୪ ସେପ୍ଟେମ୍ବର ୧୯୬୯ ୍*

**ଜୀବନ ତୀର୍ଥ**

ସବୁଠି ଦେଖିଲି ଉଚ୍ଚେ ସୁନୀଳ ଆକାଶ, ନିମ୍ନଦେଶେ ସବୁଜ ପ୍ରାନ୍ତର;
ସବୁଠି ଦେଖିଲି ସେହି କୁସୁମ ସୁହାସ, ବନାନୀର ପାଦପ ପତର | -୧

ସବୁଠି ସେପରି ବହେ ମନ୍ଦ ସ୍ନିଗ୍ଧ ବାୟୁ, କେବେ ପୁଣି ଶୀତ, ତପ୍ତ ଅତି,
ସବୁଠି ଅଛନ୍ତି ସେହି ଶୁଆ ଶାରୀ କାଉ, ମନଭୁଲା ପକ୍ଷୀ ଜାତି ଜାତି |-୨

ବହୁଛି ସେପରି ଶତ ଖର ସ୍ରୋତସ୍ୱତୀ ଖାଇ ଦୁଇ କୂଳର ମୃତ୍ତିକା,
ଫଳୁଅଛି କେତେ କେତେ ଫଳ ନିତି ନିତି ସର୍ବତ୍ର ହିଁ ଗଛ କରି ଝଙ୍କା | -୩

ସବୁ ଗ୍ରାମ-ଦାଣ୍ଡେ ରହିଅଛି ବାଲି ଧୂଳି, ଗୋପାଳ ଗୋଧନ-ଗୋଷ୍ଠ-ବେଣୁ,
ସେହିପରି ତରଙ୍ଗିତ ଶ୍ୟାମ ଶସ୍ୟାବଳୀ, ମଧୁପ ବହେ ସେ ଫୁଲରେଣୁ | -୪

ସବୁଠି ରାତିରେ ହସେ ସେହି ଚନ୍ଦ୍ର ଗୋଟି ଲୁଚି ଲୁଚି ଖଣ୍ଡ ଖଣ୍ଡ ମେଘେ,
କୋଟି କୋଟି ତାରା କରି ଆଖି ମିଟିମିଟି, ବିକଶନ୍ତି ଆକୁଳ ଆବେଗେ | -୫

ସବୁ ସ୍ଥାନେ ପଥପ୍ରାନ୍ତେ ସେହି ଗୋଳି ଜଳ ବହିଯାଏ ଅମାନିଆଁ ହୋଇ,
ସବୁଠି ତୋଷଇ ମୋର ମାନସାନ୍ତରାଳ, ବିହଙ୍ଗ ମଧୁର ସ୍ୱନେ ଗାଇ | -୬

ସବୁ ତ ସର୍ବତ୍ର ଅଛି କି ଅବା ବିଚିତ୍ର ଅଛି ମୋର ସେହି କ୍ଷୁଦ୍ର ଗ୍ରାମେ ?
ଗର୍ବିତ ହେବାକୁ କିଛି ନାହିଁ ତହିଁ ମାତ୍ର, ତଥାପି ମୁଁ ନାଚେ ତାହା ନାମେ | -୭

ସ୍ମରେ ମୁହିଁ ନିତି ତାର କ୍ଷୁଦ୍ର ସ୍ରୋତସ୍ୱିନୀ, ତାହାର ସେ ଉନ୍ମୁକ୍ତ ପ୍ରାଙ୍ଗଣ,
ମନେପଡେ ମୋର ସେହି କୁସୁମହାସିନୀ ସୁକୋମଳ ଲତା-ବୁଦା-ବଣ । -୮

କେବେ କେବେ ପୁଣି ମୋର ସେହି ଦୁର୍ବାଦଳ ହୁଅନ୍ତି ଅଙ୍କିତ ଚିତ୍ତପଟେ,
ଅଦୂରର ବନକଞ୍ଜ ପରେ ବର୍ଣ୍ଣୋଜ୍ଜ୍ୱଳ ଜଳଦ ହସଇ ଚିତ୍ରଛଟେ । -୯

ମନେପଡେ ମୋହର ସେ ଧୂଳି ମାଟି ପକ୍ଷୀ ତୋଟାମାଳ କୂପ ପୁଷ୍କରିଣୀ,
ଭାବେ ମୁଁ ଆସିଲି ରଖି କାହିଁ ସେହି ବନ, ବନଜନ ଲଳିତ ରାଗିଣୀ । -୧୦

କାହିଁ ଅଛି ସେଦିନର ପ୍ରିଯ ବିଦ୍ୟାଳୟ, ସମୀପସ୍ଥ ମହା ବଟବୃକ୍ଷ ?
ବିଜନେ ସେ ବନେ ବସି କେତେ ଆଖିଲୁହ ବିତାଇଛି କିଏ ଦେବ ସାକ୍ଷ୍ୟ?୧୧

ଯାଇଛି ସେ ଗ୍ରାମେ ବହି ଆଦ୍ୟ ପ୍ରେମ ମୋର, ଜୀବନେ ମଧୁର ଯାହା କିଛି;
ସେଇଠି ଗଢିଲି ମୂଳଭିତ୍ତି ଜୀବନର, ଫେଇଲି ହୃଦୟ-ଦ୍ୱାର-କଞ୍ଚି ।-୧୨

ତୁହି ମା' ମଧୁର ଭାଷା ଦେଇଗଲୁ ମୋତେ, ଦେଇଅଛୁ ସୁମଧୁର ଭାବ,
ମୋ' ପରେ ଆଦର ସ୍ନେହ ଢାଳିଅଛୁ କେତେ, କଳି ମୁଁ ତ ନ ପାରଇ ଲବ ।-
୧୩

ତୁହି ତ ଦେଇଛୁ ମୋତେ ମହାବଳୀ ଆଶା, ଆଜୀବନ ଯା' ଅବଲମ୍ବନ;
ଜାଣେ ନା କି ରୂପେ ତାହା ଲାଗିଲା ସହସା, ଜାଣେ କିନ୍ତୁ ସେ ତୋ ଅବଦାନ
।୧୪

ତୁହି ମା ଅଜାଡି ଦେଲୁ ସୁଗଭୀର ଭାବ, ଦେଇଛୁ ଗୋ ଅଦମ୍ୟ ପିପାସା,
ମୋ ଜୀବନତୀର୍ଥ ! କରଞ୍ଜିଆ ନାମ ତବ, ଝୁରେ ତୋତେ କି ଦିବସ ନିଶା ।-
୧୫

ବହୁତ ଦୂରେ ମା ତୋତେ ଆସିଅଛି ଛାଡି, ତଥାପି ମୋ ବ୍ୟାକୁଳ ହୃଦୟ
ଧାଉଁଅଛି ତୋହପାଶ ନିତି ହରଘଡି, ତୋ ପଦେ ପ୍ରଣାମ ସବିନୟ |-୧୬

*ଲଲାଟେନ୍ଦୁ କବି* ୫-ଜୁନ୍-୧୯୬୯

## ଫୁଲ ପ୍ରତି

ଆହା କି ମହା ସୁଖରେ
ଫୁଟିଅଛୁ ଫୁଲଟି ରେ
ତୋତେ ଦେଖି ମୋ ଅନ୍ତର
ଲଭଇ ସୁଖ ଅପାର |
କି ବା ମହାପ୍ରେମେ ମତ୍ତ ହୋଇ ଭ୍ରମେ
ତୋହ ପାଶରେ ଭ୍ରମର | -୧

ଆନନ୍ଦ-ଭୋଳେ ତୋ ବୃନ୍ତ
ଧରିଛି ତୋତେ ନିରତ,
ଦୋଳେ ତୋତେ କୋଳେ ଧରି,
ହସୁ ତହିଁ ଥରି ଥରି |
ମାଆ ପରି କେତେ ଆଦରେ ସେ ତୋତେ
କୋଟିନିଧି ଜ୍ଞାନ କରି | -୨

ଫୁଟି ଆନ କେତେ ଫୁଲ,
ନିତି ନିତି ତୋହ ତୁଲ
ହସନ୍ତି ଆନନ୍ଦେ ଭାସି
ଦିବ୍ୟ ଜ୍ୟୋତି ପରକାଶି;
କିଏ ଏକ ଦିନେ କିଏ ଅବା ଆନେ
ଆପଣା ଭାଗ୍ୟେ ପ୍ରଶଂସି | -୩
କ୍ଷୁଦ୍ର ହେଲଦହେଁ ତୋ ଜୀବ,
ନ ଲଭୁ ପଛଏ ଗୌରବ,
ତୋ ଜୀବନ ଅଟେ ସାର
କରି ସୁଖର ସଂଞ୍ଚାର
ଅଳପେ ଅଳପେ ଆନ ହୃଦପଟେ
ହେଉ ପଛେ କ୍ଷଣକର | -୪

ଆଳାପି ନ ପାରୁ ତୁହି,
ତହିଁ ଦୁଃଖ କର ନାହିଁ |
ହୁଅ ସଦା କର୍ମବୀର,
ବାକ୍ୟ-ବଡପଣ ଛାର |
ବାକ୍ୟ-ଶକ୍ତି ନାହିଁ ବୋଲି ଦୁଃଖି ନୋହି
ନୀରବ ସାଧନା କର | -୫

ଆନ ପ୍ରସୂନ ସମାନ
ସାର୍ଥ ହେବ ତୋ ଜୀବନ
ଝଡିବୁ ତୁ ଯେତେବେଳେ
ମାତୃ-ଲତା ପଦ ତଳେ,
ମାତୃଭୂମି, ମାତା ପଦ ସେବି ଯଥା
ନର ଜୀଏ କାଳେ କାଳେ | -୬

ଝଡିଲେ ଫୁଲ ମଉଳି
ବାଲି ସଙ୍ଗେ ଅବା ବାଲି
ହେବୁ କାହା ପଦ-ଚାପେ,
ନ ମଣିବେ ତୋତେ ଦର୍ପେ ;
ତଥାପି ମୁଁ ତୋର ଜାଣି ବଡପଣ
ଗାଇବି ତୋ ଜୟ କଣ୍ଠେ | -୭

*ଲଲାଟେନ୍ଦୁ କବି* ୧୯ ଏପ୍ରିଲ ୧୯୬୯ ହରିଶରଣମ୍

**ଭାଇ ଓ ବନ୍ଧୁ**

ଭାଇ ଓ ବନ୍ଧୁ ଦୁଇଗୋଟି ପ୍ରାଣୀ 'ଛନ୍ତି ଏ ସଂସାରେ,
ଜଣକ ଦୁଃଖେ ଦୁହିଙ୍କ ହୃଦୟ ସମବେଦନାରେ ଭରେ |
ତଥାପି ଭାଇଠୁ ବନ୍ଧୁର ବଡପଣ
ସହଜେ ସତ୍ୟ ପ୍ରତୀତ ହୁଅଇ ଜାଣ |
ଆଜନମ ତୁମେ ଭାଇର ସହିତେ ଆସିଅଛ ପରା ବଢି,
ବାଧ୍ଯ ତୁମକୁ ଭଲ ପାଇବାକୁ, ନ ପାରିବ ସେ ତା' ଏଡି | -୧
ବନ୍ଧୁ କିନ୍ତୁ ତୁମରି ମୁହଁକୁ ଚାହିଁ
ତୁମରି ସେନେହ-ଭରା ଅନ୍ତର ପାଇଁ
ଢାଳି ଦେଇଅଛି ଅନ୍ତରେ ତାର ଗଭୀର ସେନେହରାଜି
ବନ୍ଧୁଠୁ ଭାଇ ବଡ ବୋଲି ତେଣୁ ମନ ହେଉ ନାହିଁ ରାଜି |
ଭାଇର ମମତା ସମ୍ପଦ ପାଇଁ ତୁଟେ
ବନ୍ଧୁ-ସେନେହ ମରଣେ ଅଧିକ ଫୁଟେ | -୨
*ଲଲାଟେନ୍ଦୁ କବି* ୦୧-ଜୁନ- ୧୯୬୯ ହରିଶରଣମ୍

## ପ୍ରାର୍ଥନା - ୧

ଲୋଡା ନହିଁ ପ୍ରଭୁ ମୋର ବିପୁଳ ବିଭବ,
ଧନ ଜନ ସନମାନ କି ବା ଗଉରବ |

କହୁ ନାହିଁ ଢାଳିଦିଅ ସୁଖ ଶାନ୍ତି ପ୍ରୀତି,
ମାଗୁନାହିଁ ଉଚ୍ଚାସନ, ଅକ୍ଷୟ ସୁକୃତି |

ମାଗୁ ନାହିଁ ମୃତ୍ୟୁ ଅନ୍ତେ ପୁଣ୍ୟ ଦିବ୍ୟ ଧାମ,
ମାଗୁ ନାହିଁ ପିତା ତବ ଶ୍ରୀଚରଣେ ସ୍ଥାନ |

ଯାହା ଦେଇଅଛ ପ୍ରଭୁ ବହୁତ ମୋହର,
ନାହିଁ ନାହିଁ ତ୍ରିଭୁବନେ ତାର ପଟାନ୍ତର |

ମାଗିନି ମୋ ପାଇଁ କିଛି ଦେଇଅଛ ସବୁ,
ଲୋଡା ନାହିଁ ଏତେ ମୋର, ଲୋଡା ନାହିଁ ପ୍ରଭୁ |

ଏତିକି ଯାଚନା ତବ ଚରଣ-କମଳେ
ଦୁଃଖି-ରଙ୍କ ସୃଜିଅଛ ଯେତେ ମହୀତଳେ
କରିବ କରୁଣା ଯେତେ ଅକିଞ୍ଚନ ଜନେ,
ଏତିକି ମିନତି ମୋର ପତିତପାବନେ |

*ଲଲାଟେନ୍ଦୁ କବି ୧୯୬୯*

## ପ୍ରାର୍ଥନା - ୨

ଅପର ଦୁଃଖ କଷଣ ଦେଖି
ଦୁଃଖ କାହାଣୀ କବିତା ଲେଖି
ପ୍ରଭୁ ହେ ଦିଅ
ଆଶିଷ ଯା, ଲଭି ନେତ୍ରୁ ମୋହର ଝରିବ ଲୁହ |
ସେହି ଯେ ଲୋତକ ବକ୍ଷେ ବହି
ଅଭିଳାଷ ସବୁ ଦେଉ ମୋ ଧୋଇ,
ତୁମ ଚରଣେ
ମିନତି ଏତକି କରୁଅଛି ମୁହିଁ ଅଧମ ଜଣେ |
*ଲଳାଟେନ୍ଦୁ କବି ୧୯୬୮*
ଃ

## ଫୁଲ ଓ ଶିଶିର

ତୋର- ସ୍ୱଛ ସୁଢଳ ତନୁ ଗୋଟି
କିଆଁ - ମୋ ପରେ ଶିଶିର ଦେଲୁ ଲୋଟି?
ଘେନି - ଛବି ମୋ ତୋହର ଅନ୍ତରେ
ମୋତେ - ଭସାଇଲୁ ପ୍ରେମ ପାରାବାରେ ?
ଯେବେ - ପାହିଲା ତମସ, ତୋତେ ଦେଖି
କେତେ - କଳ୍ପନା-ଗୀତି ଗଲି ଲେଖି |
ମୁଁ ତ - ଦିବସ ରଜନୀ ତୋର ସାଥେ
ଭାବି - ଥିଲି ବିତାଇବି ଧୀର ବାତେ |
ଏବେ - ଯାଉଛୁ ତୁ କାହିଁ ମୋତେ ଛାଡି?
ଏକା - ଯିବି ମୁଁ ବିରହେ ସିନା ପୋଡି !

କହେ -     ଶିଶିର ତାହାର କଥା ଶୁଣି
ତୁ କି -     ହେବୁ ରେ ମୋହର ପ୍ରଣୟିନୀ ?
ପ୍ରେମ -     ମାଗି ନ ଥିଲି ମୁଁ କଳିକା ରେ,
ରାତି  -     ହେମାଳ ବତାସ ପରଶରେ
ମୋତେ     -     ହେମାଳ ଲାଗିଲା ଦେହମୟ
ବୋଲି-     ଲୋଡିଥିଲି ତୋର ଆଶ୍ରୟ |
ବିତି  -     ଗଲାଣି ତୁହିନ-ଶୀତ ରାତି
ତୋତେ     -     ଜାଳିବ ତପନ ଖର ତାତି,
ତୁ ତ -     ମଉଳି ପଡିବୁ ଭୂଇଁ ତଳେ,
ତେଣୁ -     ଚାଲିଲି ମୁକ୍ତ ନଭ କୋଳେ |

*ଲଲାଟେନ୍ଦୁ କବି*  ୧୯୭୦

## ଯାହା ମୁଁ ପାଇଥିଲି

ଗୋଲାପରେ, ଫୁଲ ତୋତେ ମାଗି ତ ନ ଥିଲି
ମାଗିଥିଲି ସୁବାସ ତୋହର
ଆନନ୍ଦେ ପ୍ରଶ୍ୱାସ ନେଇ ବଞ୍ଚିଯିବି ବୋଲି
କିମ୍ପାଁ ଦେଲୁ କଣ୍ଟା ଉପହାର?     -୧

ଅମ୍ବୁଦ ହେ, ଲୋଡି ନାହିଁ ଜଳ କଣିକାଏ,
ଚାହିଁ ଥିଲି କେବଳ ତୋ ଛାୟା
ବିଶ୍ରମିବି ବୋଲି ସେହି ଛାୟାରେ ଟିକିଏ,
ବଜ୍ର-କମ୍ପେ ରଚିଲୁ କି ମାୟା ?     -୨

ବିହଙ୍ଗମ, ଦେଖି ତୋତେ ପତ୍ର ଗହଳରେ
ପିଞ୍ଜରାକୁ ନ ଥିଲି ତ ଡାକି
କହିଲି ପ୍ରୀତିର ଗୀତ ଗାଇବାକୁ ଥରେ,
ଉପହାସେ କନ୍ଦାଇଲୁ ପକ୍ଷୀ !                    -୩

ରେ ଗୋଲାପ, ବିହଙ୍ଗମ, ଅମ୍ବୁଧର, ଶୁଣ
କୁହ କୁହ ଏ କି ବ୍ୟବହାର ?
"କହୁବାକୁ ନାହିଁ କିଛି ଏହାର କାରଣ
ହୁଏ ଯାହା ହେବ ଚିରକାଳ |"                    -୪

*ଲଲାଟେନ୍ଦୁ କବି*
୦୩ ଏପ୍ରିଲ ୧୯୭୧
ଂ

**ପ୍ରତୀକ୍ଷା**

ଅନ୍ଧକାରେ ଅନ୍ଧ ଏ ରଜନୀ ଉତ୍ସଙ୍ଗେ ମୁଁ ଏକା ବସି ବସି
କୁହ କୁହ ଆଗୋ ପ୍ରଣୟିନୀ ବିତାଇବି ଆଉ କେତେ ନିଶି !     ୧

କେବେ ତୁମର ନୁପୂରର ତାନେ ଚମକିବ ଜୀର୍ଣ୍ଣ ଏ କୁଟୀର
କୁହ କିମ୍ପାଁ ରହିଲ ମଉନେ କଥା କୁହ ପ୍ରଣୟିନୀ ମୋର |     -୨

ତୁମେ ମୋର ସକଳ କଳ୍ପନା, ତୁମେ ଏକା ନିରାଶାରେ ଆଶା
ତୁମ ବିନୁ ତୁଟିଯାଏ ସିନା ଧୀରେ ଧୀରେ ବଞ୍ଚିବାର ନିଶା |     -୩

ଜୀବନର ସ୍ତରେ ସ୍ତରେ ସଖି, ଜୀବନଟା ହଜି ହଜି ଯାଏ,
ଖାଲି ତୁମ ପଥ ଦେଖି ଦେଖି ରହିଛି ମୁଁ ବଞ୍ଚି ଆଜି ଯାଏ |     -୪

ନାହିଁ ଯାହା ଏ ସାରା ସଂସାରେ ନ ମିଳେ ଯା ନଗରେ, ମନ୍ଦିରେ
ପାଇବି ମୁଁ ସେହି ସୁଖ ସତେ ଲୁଚି ତୁମ ପଣତ କାନିରେ |  -୫

ମଉନୀ ଗୋ ତୁମ ପଥ ଚାହିଁ ବିତିଲାଣି ଅନେକ ବରଷ
କୁହ କେବେ ଦେବ ଅବା ନାହିଁ ତୁମର ସେ ଅମିୟ ପରଶ |  -୬

କିଏ ଅବ ଜାଣେ କେଉଁ ଦିନ ଘଟିବ କି ଦୁର୍ଦ୍ଦିନ ବଉଦ,
ଆସ ସଖି! ଛାଡ ଅଭିମାନ, ରଚିଯିବା ପ୍ରୀତିର ସଉଧ |  -୭

*ଲଲାଟେନ୍ଦୁ କବି*   ୧୯୭୪   ୍

**ଉତ୍କଳ ଜନନୀ**

କି ଭାଷେ ଜନନୀ ସାମାନ୍ୟ ଲେଖନୀ ଚିତ୍ରିବ ତୋ ଗୁଣ ଗାନ,
ଅଳପ ତ ନୁହେଁ, ସେ ଗୁଣ ଚିନ୍ତନେ ଜଡିଭୂତ ହୁଏ ମନ |  -୧

ଯେଉଁ ଯଶଃ ଗାନ ହେତୁ ବିସ୍ମରଣ ଢାଙ୍କି ନାହିଁ କବିଜନେ,
ସେ ମହିମା ତୋର ଅତି ଚମତ୍କାର, ଅକ୍ଷମ ବିପ୍ରକର୍ଷଣେ |  -୨

ଯା' କଟି-ମେଖଳା ପୁଣ୍ୟ-ପୁତଜଳା ଅବିରତ ମହାନଦୀ
ଧାଇଁଛି ଆଗକୁ ବିସ୍ତାରିତ ବନ – ସବୁଜ ବସନ ଭେଦି |  -୩

ଯା'ର ପାଦତଳେ ଶିଶୁ ସମ ରୋଳେ କାନ୍ଦଇ ବଙ୍ଗ ସାଗର,
ଯା'ର କଣ୍ଠଦେଶେ ରୁଚିରେ ବିଭାସେ ଖର ବୈତରଣୀ ହାର |  -୪

ଯାହା ଗଣ୍ଡସ୍ଥଳେ ସୁନ୍ଥା ପରି ଝଳେ ମେଘାସନ ଶିର ଟେକି,
ଯା' ମୁଖେ ଝରିଲେ ଶତ ସୁଧା ବିନ୍ଦୁ ହରଷେ ନାଚଇ କେକି |  -୫

ଯା’ ପଦ ନୂପୁର ଉଜ୍ଜ୍ୱଳ ଭାସ୍ୱର, ଉର୍ଦ୍ଧମସ୍ତ ଦେଓମାଳି,
ସେ ମାଟି ମହିମା, ଅତୁଳ ଗାରିମା କିଏ ସେ ପାରିବ କଳି ?    -୬

ଆଦି କାଳୁ ମାତ, ଗାଇ ତୋର ଗୀତ ଥକିଲେଣି ପକ୍ଷୀମାନେ,
କାହିଁ ସ୍ୱର୍ଣ୍ଣରେଖା ରୂପସୀ ଚିଲିକା ମୁଖରିତ ତାଙ୍କ ଗାନେ |    -୭

ତୁହି ଲୋ ଜନିତ୍ରୀ ଉତ୍କଳ ଧରିତ୍ରୀ ପାଳୁଅଛୁ ସ୍ନେହଭରେ
କୋଟି କୋଟି ସୁତ, ବୀର ଶତ ଶତ ଧରି ଆପଣା କୋଳରେ | -୮

ତୋର ଜଗନ୍ନାଥ ଲାଗି ଲୋ ଗରବ ଆସେ ଆଜି ଆମ୍ଭ ମନେ,
ଭାଗବତ ବାଣୀ ସଂସ୍କୃତରୁ ଆଣି ପ୍ରଚାରିଲେ ଗ୍ରାମେ ଗ୍ରାମେ |    -୯

କବିତା-କିରୀଟ କବି ସମରାଟ ରଚିଲେ କାବ୍ୟ ଅନେକ,
ବାଟେ ଘାଟେ ହାଟେ ବିପୁଳ ଉଚ୍ଚାଟେ ସେ ଗୀତ ଗାଏ ପଥିକ | -୧୦

ଗଣକ ପ୍ରବର ଚନ୍ଦର ଶେଖର ଗ୍ରହଗତି ନିରୂପଣ
କାଠି ଖଣ୍ଡି ଧରି ଯାଇଛନ୍ତି କରି - କହେ ‘ସିଦ୍ଧାନ୍ତ ଦର୍ପଣ’. |    -୧୧

ପ୍ରେମିକ ଚୈତନ୍ୟ ଜଗତରେ ଧନ୍ୟ ବୈଷ୍ଣବ ଧର୍ମ ପ୍ରଚାରି,
ଆଜି ବି ବୈଷ୍ଣବ ଗାଉଛି, ଗାଇବ ବିଷ୍ଣୁ ନାମ ସମୁଦ୍ଧାରି |    -୧୨

ଭିକ୍ଷୁ ଉପଗୁପ୍ତ ହନନ-ପ୍ରମତ୍ତ ଅଶୋକ ରାଜନେ ଚାହିଁ
କହିଲା ଯେ କଥା, ତରଳି ଗଲା ତା’ କଠୋର ହୃଦୟ ତହିଁ |    -୧୩

ନାହିଁ ମରକତ ଅଛି କାଠଯୋଡି ପଶୁ ନାହିଁ ବଢି ପାଣି,
କଟକ ନଗରେ ଆଗ ପରି ଆଉ ବୁଡୁ ନି ବାସ ବିପଣି |    -୧୪

ନରସିଂହ ଦେବ କୋଣାରକେ ଦେବ-ମନ୍ଦିର ଯେ ଥିଲେ ଗଢି,
ହେଲେ ହେଁ ଭଗନ ଦର୍ଶକ ନୟନ ହରେ ତା’ ଅତୁଳ ଶିରୀ |    -୧୫

ମହାର୍ଣ୍ଣବ ତୀର ଶ୍ରୀକ୍ଷେତ୍ର ମନ୍ଦିର, ଲିଙ୍ଗରାଜ ଦେବାଳୟ
ବୋଲୁଛନ୍ତି ନିତି "ଅନଙ୍ଗ ଭୀଷଣ, ଲଲାଟ ରାଜନ ଜୟ |"    -୧୬

ଋଷି ଗୋପବନ୍ଧୁ ଦୀନହୀନ ବନ୍ଧୁ ବଢି ଆସିବାରୁ ମାଡି
ବାହାରି ପଡିଲେ ଜନତା ସେବାରେ ପୀଡିତ ପୁତ୍ରେ ଛାଡି |    -୧୭

ପୁରୁଷ ଉତ୍ତମ ଗଜପତି ବୀର ଜିଣିଲେ କାଞ୍ଚି ଦେଶ,
ଜନନୀ ଲୋ ତୋର ଅଙ୍ଗୁ ନିଭିଲା ଅବମାନନାର ରୋଷ |    -୧୮

ମଗଧ ସେ ଦିନ କରିଥିଲା ରଣ ଦର୍ପେ ଓଡିଶା ଦେଶେ,
ପ୍ରତିଶୋଧ ତା’ର ନେଲା ଖାରବେଳ ବହୁଦିନ ପରେ ଶେଷେ |    -୧୯

ହେ ଉତ୍କଳ ମାତ, କାହିଁ ତୋ ବିଗତ ଯଶଃ-ଗଉରବ କେତେ,
ଅତୀତ କାଳର ବଣିଜ-ବେପାର, ଅମାପ ବିଭବ ଯେତେ ?    -୨୦
କାହିଁ ପୂରୁବର ଖଣ୍ଡାୟତ ବୀର ରଣକୁଶଳପଣିଆଁ ?
ଅରାତି ସମରେ ଶହୀଦ ହେବାରେ ନାହିଁ ତ ଓଡିଆ ନାଁ’ |    -୨୧

ନାହିଁ ନାହିଁ ତିଳେ ସୁଖ ତୋର କୋଳେ ସବୁଠି ଜଳୁଛି ନିଆଁ,
ନାହିଁ ତ ଆଶ୍ୱାସ, ନାଶିଛି ବିଶ୍ୱାସ ବିସ୍ଫୋରକର ଧୂଆଁ |    -୨୨

ଅଛି ତ ସେ କାଳ ବନ, ଗିରି, ଜଳ, ଲଟା, ବିଲ, ଭୂଇଁ ସବୁ,
ଏବେ ବି ତ ସେହି ମୂର୍ଚ୍ଛନା ଆସେ ପକ୍ଷୀର କଳରବୁ |    -୨୩

ସେହି ଜଳ ରାଶି, ତପତ ବତାସି, ଏବେ ବି ତୋର ସନ୍ତାନ -
ଶରୀରେ ବହଇ ଜୀବନ ଖେଳାଇ ଅହରହ ଅନୁକ୍ଷଣ |           -୨୪

ତେବେ କାହିଁ ପାଇଁ କାଙ୍ଗାଳ କହ ଆଜି ଏ ଓଡିଆ ଜାତି ?
କି ପାଇଁ ବକ୍ଷେ ନାହିଁ କା' ଦମ୍ଭ, ରକ୍ତରେ ନାହିଁ ତାତି ?          -୨୫

ଆସିବ କି ଦିନ ହୋଇ ଏକମନ ସକଳେ ଧରିବେ ଜିଦ୍,
ଉତ୍କଳ କୋଳେ ଉଠିବା ଆମେ ରେ ଜୟ ହିନ୍ଦ୍ ଜୟ ହିନ୍ଦ୍ |       -୨୬

ଲଲାଟେନ୍ଦୁ କବି     ୨୫ ଫେବୃୟାରୀ ୧୯୬୯ ଃ

## ମେଘ ଦର୍ଶନେ

କେତେ ମୁଁ ଶଇଶବେ ବଆଞ୍ଛିଥିଲି ତୋତେ
ତୋ ସାଥେ ମିଳି ମୁଁ କି ପାରନ୍ତି ଖେଳି ସତେ !           -୧

ରାତ୍ରେ ତୋ ଉପରେ ବସି ପରମ ସୁଖେ
ଦେଖନ୍ତି ଗ୍ରହ ତାରା ଚାରୁ ଚନ୍ଦ୍ରମା ମୁଖେ |             -୨

ତୁମ୍ଭି ଜହ୍ନରେ ତୋଳିଣ ତାରାଫୁଲ
ଲଗାନ୍ତି କପାଳେ ମୋ, ଦିଶନ୍ତା ଝଲମଲ |             -୩

ମସ୍ତେ ଧୂମକେତୁ ଖଚନ୍ତି ହୀରା କରି,
ଝଟକୁ ଥାଆନ୍ତା ସେ ଦିବ୍ୟ ଜ୍ୟୋତି ଧରି |             -୪

ଭାବିଥିଲି ମୁଁ, ମେଘ ପୁଷ୍କରିଣୀଟିଏ,
ନ ହେଲେ କାହୁଁ ସିଏ ଏତେକ ଜଳ ଦିଏ ?        -୫

ସନ୍ତରଣ ଥରେ କରନ୍ତି ତୋର ନୀରେ,
ଶୀତଳ ବାୟୁ ମୋତେ କୋଳାନ୍ତା ଶରଧାରେ | -୬

ଅପର ଦିଗେ ପୁଣି ଇନ୍ଦ୍ରଧନୁ ଦେଖି
ଅପଲକ ମୋ ଆଖି ରହନ୍ତା ତହିଁ ଲାଖି | -୭

ଭାସି ଯାଆନ୍ତି ତହିଁ ତୋ ଜଳେ ସନ୍ତରି,
ତ'ପରେ ଠିଆ ହୋଇ ତଳକୁ ଦୃଷ୍ଟି କରି -୮

କହନ୍ତି - "ମାଆ ମାଆ, ଦେଖ ମୁଁ ଆସି ଏଠି
ହେଲିଣି, ତୁମେ ମୋତେ ଖୋଜୁଛ କି ଗୋ ସେଠି ? -୯

ଆସିବୁ ଥରେ ମାଆ ସକଳେ ଧରି ସାଥେ,
ଏଠାରେ ମିଳି ସର୍ବେ ଖେଳିବା କେତେ ମନ୍ତେ |" -୧୦

ଶୁଭନ୍ତା ନାହିଁ ଯେବେ ଏତେ ଦୂରେ ମୋ କଥା,
ଦେଖନ୍ତି ନାହିଁ - ମାଆ ଚାହୁଁଛି ଟେକି ମଥା, -୧୧

ଦିଶନ୍ତେ ନାହିଁ ମୋତେ ଭୂତଳେ ଭଗ୍ନୀ ଭାଇ,
କାନ୍ଦନ୍ତି ଆକୁଳେ ମୁଁ ଅଶ୍ରୁ ବରଷାଇ | -୧୨

ଚାତକ କେତେ ଆସି ସ୍କନ୍ଧେ ବସି ମୋର
ଊର୍ଦ୍ଧ୍ୱେ ମୁଖ କରି ପିଉ ଥାଆନ୍ତେ ନୀର | -୧୩

ଧରିଣ ଗୋଟିକୁ ମୁଁ ଆଉଁସି ଧୀରେ ଧୀରେ
ଚୁମ୍ବି ମୁଖ ତା'ର ଉଡାନ୍ତି ଆକାଶରେ | -୧୪

ଉଡଇ ତୋର ପାଶେ ରଙ୍ଗରଙ୍ଗିଆ ଗୁଡି,
ତା' ଦେଖି ତହିଁ ବସି ଆସନ୍ତି ଥରେ ଉଡି । -୧୫

ସ୍କନ୍ଧୁ ଡେଇଁ ତୋର ବସନ୍ତି ତା' ଉପରେ,
ଦୋଳନ୍ତା ସୁଖେ ତା' ମୋ କଅଁଳ ପରଶରେ । -୧୬

କ୍ଷଣେ ମୁଁ ମହୋଲ୍ଲାସେ ଭୁଲନ୍ତି ଆପଣାକୁ,
ଭାଇ, ବନ୍ଧୁ ସମସ୍ତ, ବାପା, ମା, ଭିଉଣୀକୁ । -୧୭

ମଣନ୍ତି କ୍ଷଣାନ୍ତରେ ନିଜକୁ ଏକାଟିଆ,
ଭାବନ୍ତି, ନାହିଁ ଏଠି କେହି ମୋହର ସାହା । -୧୮

ଇନ୍ଦ୍ରଧନୁଟିକୁ ଧରି ମୁଁ ଝୁଲି ଝୁଲି,
ଓହ୍ଲାଇ ଘରେ ଯା'ନ୍ତି ଆନନ୍ଦେ ଉଚ୍ଛୁଳି । -୧୯

ବଖାଣି ବସନ୍ତି ମୋ ଭ୍ରମଣ କଥାମାନ,
ଶୁଣନ୍ତେ କାନ ପାତି ସର୍ବେ ମୋ ଅଭିଯାନ । -୨୦

ବୁଝୁଛି ଏବେ, ସେହି ସକଳ କଳପନା,
ବାଲୁତ-ଚପଳତା ସମୟେ ଶୋଭେ ସିନା ! -୨୧

ଜାଣୁଛି ଏ ଆଶା ମୋ ନୋହିବ କେବେ ସତ,
ଏଣୁ ମୋ ହୃଦେ ହୁଏ ଦୁଃଖ ସଞ୍ଜାତ । -୨୨

ତଥାପି ମହାନନ୍ଦ ଲଭି ମୁହିଁ ମନେ
ବାଲ୍ୟ ଭାବମାନ ସୁମରି ଏ ଲଗନେ । -୨୩

କେ ଜାଣି ହେବି ଯେବେ ଆହୁରି କେତେ ବଡ,
ବହିବ ଚଉପାଶେ ଘୋର ସଂସାର ଝଡ, -୨୪

ପାଇବି ବେଳ ସତେ ଭାବିବା ପାଇଁ ବସି
ସେଦିନ ସରଳତା, ଚପଳ ଭାବରାଶି ? -୨୫

କର୍ମଭାରେ ସବୁ ଭୁଲିବି କି ସେଲାଗେ,
ଏ ଭାବି ମନେ ମୋର ଗଭୀର ଦୁଃଖ ଜାଗେ । -୨୬

*ଲଳାଟେନ୍ଦୁ କବି* ୩୦ ଏପ୍ରିଲ ୧୯୬୯ ଃ

### ଜନ୍ମଭୂମି

ଜନମଭୂଇଁ ଲୋ ଚରଣେ ତୋହର ନତ କରୁଅଛି ଶିର,
ଚନ୍ଦନ କରି ତୋର ପାଦଧୂଳି ଲଲାଟେ ବୋଳୁଛି ମୋର । -୧

ଜନମିଲି ମୁହିଁ ତୋହରି କୋଳରେ, ତୋର କୋଳେ ହେଲି ବଡ,
ତୋହରି ଆହାର, ପାଣି, ପବନରେ ଗଢା ମୋର ମାଂସ, ହାଡ ।-୨

ତୋହରି ବାଲିରେ ଗଢି ବାଲିଘର ଖେଳିଲି ତୋହରି କୋଳେ,
ତୋର ବିଲ ବନ ପ୍ରାନ୍ତରେ ବୁଲିଲି, ତୋହରି ଲତା ଗହଳେ । -୩

ତୋହରି କୋଳରେ ମହା ଆନନ୍ଦରେ ଖେଳିଲି ବାଗୁଡି ଖେଳ;
ତୋହରି ଗଛରେ ଚଢିଲି, ଭାଙ୍ଗିଲି ତୋହରି ଗଛରୁ ଡାଳ । -୪

ତୋର ନଦୀଜଳେ ସ୍ନାହାନ କରିଲି, ଚଢିଲି ତୋର ପାହାଡେ,
ଲୁଚକାଳି ଖେଳେ ଲୁଚିଲି ମାଆ ଲୋ ତୋହରି ବୁଦା ଉହାଡେ | -୫

ହେଲେ ବି ମାଆ ତୁ, ସବୁବେଳେ ମୋତେ ଆସିଛୁ ଆଦର କରି,
ତୋ ସ୍ନେହ ବାତ୍ସଲ୍ୟ ଅନାବିଳ ପ୍ରେମ ମୋଠାରେ ଦେଇଛୁ ଢାଳି |-୬

ତୋର ଉପକାର ଜୀବନଯାକରେ ଶୁଝି ନ ପାରିବି ଆଉ,
ଚିରନ୍ତନ ତୋର ମହିମା ଗାନରେ ଏ ଜୀବନ ବିତି ଯାଉ |      -୭

ଲାଗିଥାଉ ମୋର ଏ ମର ଶରୀର ତୋର ସେବା କରିବାରେ,
ତୋ ଶ୍ରୀବୃଦ୍ଧିରେ ବ୍ରତୀ ହୋଇ ମୁହିଁ ବଡ ହୁଏ ସଂସାରରେ |    -୮

*ଲଲାଟେନ୍ଦୁ କବି*          ୨୭ ଅଗଷ୍ଟ ୧୯୬୭ - ୦୫ ଜାନୁୟାରୀ ୧୯୬୮
ଽ

**ସନ୍ଧ୍ୟା ଭାବନା**

ଧୀରେ ଧୀରେ ଫୁଲଟିଏ ମେଲିଲାଣି ଦେଖ ଆଖି,
କିଏ ସେ କହିବ କହ ହସୁଛି କାହାକୁ ଦେଖି !          -୧

ବହୁଅଛି କଳ କଳ ସରିତର ଜଳଧାରା,
କୂଳେ ତା'ର କାଶତଣ୍ଡୀ  ଫୁଟି କେଡେ ଦିଶେ ତୋରା |  -୨

ଗାଇଲାଣି ପକ୍ଷୀଟିଏ ସରଳ ତରଳ ଗାନ,
ଶୁଣି ସେ ମଧୁର ଗୀତ ନାଚି ଉଠୁଅଛି ମନ |      -୩

ନାନା ରଙ୍ଗେ ହସି ଉଠେ ପ୍ରତିଟୀ ଆକାଶ ତଳ,
ପ୍ରାଚୀ ଦିଗେ ଚାନ୍ଦ ଉଇଁ ଦିଶିଲାଣି ଢଳ ଢଳ ।　　　-୪

ଫୁଟିଲେଣି ଗୋଟି ଗୋଟି ତାରାଫୁଲ ଆକାଶରେ
ଭାସି ବୁଲିଲେଣି ସୁଖେ ଏଣେ ତେଣେ ଜଳଧରେ ।　　　-୫

ଲାଗିଛି ଅବନୀପର ଆହା କି ବିଚିତ୍ର ଲୀଳା,
ଚମକି ଦିଶେ ତା' ଛାଇ ଜଳେ, ସେ କି ମହାଖେଳା ।　　-୬

ନାହିଁ ଏଥି କୋଳାହଳ ସହରର ବହୁ ଦୂରେ,
ପ୍ରେମର ସଙ୍ଗୀତ ଖାଲି ବାଜେ ହୃଦ-ସିନ୍ଧୁ ତୀରେ ।　　-୭

ସୁ-ବିଶାଳ ବିଶ୍ୱ ମଧ୍ୟେ କାହାର ଗୋ ଏ ବିଧାନ ?
କାହାର ସନ୍ଧାନେ ଆଜି ଉଛୁଳି ଉଠୁଛି ପ୍ରାଣ ?　　　-୮

ଅନ୍ତରେ ଆନନ୍ଦ ଆଣେ ପ୍ରକୃତିର ସୁପ୍ରକାଶ,
ତହୁଁ ବହୁଗୁଣ ପୁଣି ବିଜନତା ସମାବେଶ ।　　　-୯

ରହନ୍ତା କି ଏହି ଭାବ ଚିରଦିନ ମୋର ସାଥେ,
ପ୍ରୀତିର ସଙ୍ଗୀତମାଳା ବିରଚନ୍ତି ସଦା ଚତ୍ତେ !　　-୧୦

ଲଲାଟେନ୍ଦୁ କବି　　　୧୯୬୯　ୢ

## ଉଠ ଉଠ ମଠ ଛାଡି

ଗଲାଣି ତ ବିତି ଅନ୍ଧାର ରାତି ଆଖି ଖୋଲି ଦେଖ ସଖି!
ପୂର୍ବ ଆକାଶ ଚମକି ଉଠିଛି ରକ୍ତ ଅଭୀର ମାଖି |
ଦେବାଳୟ ଚୂଡା ପରେ
ଅର୍ଦ୍ଧ-ଗୋଲକ ଆଙ୍କି ଦେଇଛି ସୂର୍ଯ୍ୟ କିରଣ ଗାରେ | -୧

ଚନ୍ଦ୍ର ଲୁଚିଲା ଦୁଇଘଡି ହେଲା ଦିଗ୍-ଗବାକ୍ଷର ତଳେ
ଦେଖି କୋଟୀ ତାରା ଆଲୋକ ଇସାରା ଭୟେ ଉଷାରାଣୀ କୋଳେ
ନୟନ ଦେଲେଣି ବୁଜି
ତଥାପି ତୁମର ନେତ୍ରୁ କିପରି ନିଦ୍ରା ଯାଉନି ଭାଜି ? -୨

ବାତାୟନ ପାଶେ ସୁମନ ସୁବାସେ ମତ୍ତ ଭଅଁର ଗୋଟି
ଅନ୍ଧ ଆବେଗେ ଭ୍ରାନ୍ତ ସରାଗେ ସତେ ବା ଯାଉଛି ଲୋଟି;
ଭରା ଯଉବନେ ଥାଇ
ଏମିତି ଲଗନେ ପାରେନା ବୁଝି ମୁଁ କେମିତି ପାରିଛ ଶୋଇ | -୩

(ଅସମ୍ପୂର୍ଣ୍ଣ) *ଲଳାଟେନ୍ଦୁ କବି* ୧୯୭୬ ଃ

---

## ରୁଚି ମତେ ସଂସାର

ସତ୍ୟ-ଧର୍ମ ଯଦି ବିଲୁପ୍ତ ସମ୍ପୂର୍ଣ୍ଣ,
ଅତ୍ୟନ୍ତ ଦୁର୍ବଳ ବିଧାତା ବିଧାନ || -୧-

ଶୁଭାଶୁଭ ସବୁ ଅଛନ୍ତି ସର୍ବତ୍ର
ନିଜ ରୁଚି ମତେ ଦେଖେ ନିଜ ନେତ୍ର || -୨-

"ମନ୍ଦ କଥା ମନ୍ଦ ଦୃଷ୍ଟି ମନ୍ଦ ଶ୍ରୁତି
ନ କର" - ଗନ୍ଧୀଙ୍କ ମାଙ୍କଡଙ୍କ ଉକ୍ତି || -୩-

"ମନ୍ଦ" କାଟିଦେଇ ଲେଖିଦିଅ "ଶୁଭ" -
କଳଙ୍କିତ ସାରା ସଂସାର ଦିଶିବ || -୪-

ନିଜେ ଶୁଦ୍ଧ ରଖ ତୁମ ନିଜ ମନ
ପୁଣ୍ୟପ୍ରାଣେ କର ପ୍ରଭୁଙ୍କ ଭଜନ || -୫-

*ଲଳାଟେନ୍ଦୁ କବି* ୩୧ ଅଗଷ୍ଟ ୨୦୧୪ ୍

**ଆତ୍ମକଥା ଅହଂ-ଗାଥା**

ଆତ୍ମକଥା – ଭାଷାନ୍ତରେ ଅହଂ-ଗାଥା ମୋର
ଅବ୍ୟକ୍ତିରୁ ବ୍ୟକ୍ତି ଲାଗି କଲା ହାହାକାର | -୧

ନିଜକୁ ଧିକ୍କାରି ପୁଣି ଲେଖୁଛି କବିତା
ସାହିତ୍ୟର ଶ୍ରୋତା! ଶୁଣ ମୋ ମନର ବ୍ୟଥା | -୨

ହେଉ ଗଦ୍ୟ ଅବା ପଦ୍ୟ କବିତ୍ୱ ସମସ୍ତ
ବି-ଅର୍ଥ, ନ ହେଲେ ତହୁଁ ଅପରର ହିତ | -୩

ବିଦୀର୍ଣ୍ଣ ପୁସ୍ତକ-ପଟ୍ଟ ଥାଆନ୍ତା ତା ସ୍ଥାନେ
କି କଲ୍ୟାଣ ହେଲା ତାକୁ ଲେଖି ଅଭିମାନେ ? -୪

ଦେହ ଦାହ୍ୟ; ତ୍ୟାଜ୍ୟ ମନ-ବୁଦ୍ଧି-ଅହଂକାର;
ଏଥୁ ମୁକ୍ତି ପାଇବି କି, ଲାଗୁଛି ଆତୁର | -୫

ଧନ, ମାନ, ବୁଦ୍ଧି, ଜ୍ଞାନ ଗର୍ବର କାରଣ;
ନିର୍ଦ୍ଧନତା, ମୂଢପଣ ସହିତେ ଅଜ୍ଞାନ - -୬

ସବୁଥିରେ ଅଲକ୍ଷ୍ୟରେ ପଶିଯାଏ ଅହମ୍,
ଦୁର୍ବଳ ମୁଁ, ଦିଅ ମୋତେ ଶ୍ରୀହରି ଶରଣମ୍ | -୭

*ଲଳାଟେନ୍ଦୁ କବି* ୨୭ ସେପ୍ଟେମ୍ବର ୨୦୧୪ ଃ

## ନରରୂପେ ଅଭିଷେକ

କିଏ ମୋତେ କହୁଥିଲେ ଦେଖ - ଭାଗ୍ୟଦେବୀଙ୍କର ଏକ ବିନଷ୍ଟ ତନୟ,
ଆଉ କିଏ କହୁଥିଲେ ଇଏ - ନିଜ ଧୀମତ୍ତାର କରେ ପୂର୍ଣ୍ଣ ଅବକ୍ଷୟ ||-୧-

କେତେ ଖ୍ୟାତି ପାରିଥାନ୍ତା ପାଇ - ନେଇଥିଲେ ଟିକେ ଯତ୍ନ ନିଜସ୍ୱ ମେଧାର,
କରିବ ଏ ନିର୍ଦ୍ଧନ ଜୀବନେ - ପୂର୍ବ-ଉତ୍ତର-ପୁରୁଷ-କୁଟୁମ୍ବ ଉଦ୍ଧାର ?-୨-

ଶୁଭାକାଙ୍କ୍ଷୀ ବୁଝେଇଲେ କେତେ - ସମାଜେ କରି ନେ ବାବୁ ନିଜର ପ୍ରତିଷ୍ଠା,
ଶୁଣି ମଧ ବିଦ୍ୟାଳୟ ପାଠ୍ୟେ, ତିଳେମାତ୍ର କେବେ କିନ୍ତୁ ନରଖିଲି ନିଷ୍ଠା |-୩-

ନୀରବେ ଉଦ୍ଘୋଷ କଲି ମନେ - ମାନିବିନି କାହା ନୀତି କାହାରି ଆଦର୍ଶ,
ଭିକ୍ଷା ମାଗି କାହାରି ଦର୍ଶନ - ବଞ୍ଚିବିନି, ହେବି ନାହିଁ କାହା କ୍ରୀତଦାସ |-୪-

ଜନ୍ମିଛି ମଣିଷ ହେଇ, ଯଦି - ମଣିଷ ମୁଁ; ସ୍ୱତନ୍ତ୍ର ମୁଁ ଖୋଜିବି ଅମୃତ,
ନିଜେ ଯେବେ ନ ପାରେ ତା କରି - କି ବା ଲାଭ ରହିଲେ ମୁଁ ମୃତ କି
ଜୀବିତ?-୫-

ଧରି ସେହି ଟାଣପଣ ମୋର - ଦୁଃଖ-ଦୈନ୍ୟ, ଉଚ୍ଚ-ମାନ ପାଇଛି ଅନେକ,
ହେଇନି ମୁଁ ଦେବତା, ନୃପତି - ନରରୂପେ କରିଛି ମୁଁ ନିଜ ଅଭିଷେକ | -୬-

*ଲଲାଟେନ୍ଦୁ କବି*     ୨୦ ସେପ୍ଟେମ୍ବର ୨୦୧୪
୍

**ଶେଷ ପତ୍ର**

ମର୍ତ୍ତ୍ୟଲୋକର ମୃତ୍ୟୁ-ଭୂମିରୁ ହେଇ ପାରେ ଏଇ ଶେଷ କବିତା ମୋ ସଜନୀ
କପାଳ ଫଳକେ କାଳର ଲିଖନ, କଳ କେତେ କାଳ କଳ କଳ ଶିରା,
ଧମନୀ?-୧

ଯେବେ ଅଛି ଭବେ ବଡ ଗଉରବେ ଯଥାସମ୍ଭବେ ରଖିଛି ତୋ ମନୋକାମନା
ସେହି ଆଶ୍ରୟେ ଏ ମାଟି ଆଳୟେ ଆଲୋକ ବଳୟେ ଅଛି ଭୁଲି ଶତ ଯାତନା
|୨

ମୁଦିଲେ ନୟନ ନାହିଁ ମୋର ମନ ଦେବତା ଆସନ ମାନସନମାନ ଭୋଗିବି
ଚାଖି ସୋମ-ସାକୀ ସୁଖ ପାଇବି କି, ବନ୍ଧୁ-ସଖା-ସଖୀ ଆତ୍ମୀୟ ପାଖେ
ପାଇବି? -୩

ମୁଁ ଯେ ଅକିଞ୍ଚନ, କରେ ମୁଁ ଜଣାଣ, ଜାଣେ ମୁଁ ଅଧମ ମାଗେ ଟିକେ ଥାନ
ନରକେ,
ଯେତେ ଦୀନ-ହୀନ ଜନ ଅବସ୍ଥାନ  କରନ୍ତି ସେ ସ୍ଥାନ ସରଗ ମଣିବି ପଲକେ
| -୪

ସେ ନରକେ ମୋତେ ପ୍ରଳୟ ପର୍ଯ୍ୟନ୍ତେ ରଖନ୍ତେ କି ସତେ, ଥରଟେ ଦିଅନ୍ତେ ଅଭୟ
ଯେତେ ପାପମତି ସଭିଙ୍କୁ ମୁକତି ଦେଇ ପ୍ରାଣପତି ଶେଷେ କରନ୍ତେ ମୋ ଉପାୟ |   -୫

ନରକର ବାସୀ କେହି ନୁହେଁ ଖୁସି , କେହି ହସି ହସି ମାଗେ ନାହିଁ ଯମଦଣ୍ଡ
ତାଙ୍କ ସଙ୍ଗେ ଥିବି, ହସି ହସାଇବି, ସଙ୍ଗୀତେ ଭରିବି ତାହାଙ୍କର ପ୍ରାଣ ପିଣ୍ଡ |

କେହି ଅର୍ପଣ ଅବା ତର୍ପଣ କର ନା ବାରଣ କରୁଛି ମୋ ଶେଷ ଇଛା
ଶରୀର ସୂକ୍ଷ୍ମ ହେଲେ ବି ଅନ୍ନ କରିବି ଗ୍ରହଣ, ନାହିଁ ମୋର ତିଳେ ବାଞ୍ଛା |-୭

*ଲଲାଟେନ୍ଦୁ କବି*
୨-୭ ଅକ୍ଟୋବର ୨୦୧୪

## କୁନ୍ତୀ-କବି

କୁନ୍ତୀ ଥିଲେ ବରପ୍ରାପ୍ତା, ଅବିବାହେ କଲେ ପୁତ୍ର ଜନ୍ମ;
ତୁମେ କିନ୍ତୁ କୁନ୍ତୀ ହେଇଥିବ, ମାନିବାକୁ ଅରାଜି ମୋ ମନ | -୧

ଆଗାମୀ ସାହିତ୍ୟ ସଭା ହେଲେ ଗଦ୍ୟ ମଧ୍ୟେ ଫୁଟାଅ କବିତ୍ୱ,
କ୍ଷୁଦ୍ର ଗଳ୍ପ କି ଅବା ପ୍ରବନ୍ଧେ ଗଢ ଉଚ୍ଚମାନର ସାହିତ୍ୟ |   -୨

ଆଜୀବନ ଲେଖିଅଛ ଗଦ୍ୟ - ପରୀକ୍ଷାରେ ପ୍ରତି ପ୍ରଶ୍ନୋତ୍ତରେ
ଗଦ୍ୟରେ ନ ଥାଇ ଶୃଙ୍ଖଳା, ପଦ୍ୟକାର କିଏ ଜଗତରେ ?   -୩

ଶିଖିବନି ଭାଷା, ବ୍ୟାକରଣ, ନ ବଢାଇ ଶବ୍ଦର ଭଣ୍ଡାର
ସିଧା ସିଧା କବି ପାଲଟିବ? ଧନ୍ୟ ଧନ୍ୟ କଳ୍ପନା ତୁମର ! -୪

କୁହ, କିଏ ଅଛି ମହାକବି, ସୁଗଦ୍ୟରେ ନ ରଖି ପ୍ରତିଷ୍ଠା ,
କୁନ୍ତୀ ପରି ପୁତ୍ର ଜନମାଇ ଗଢିଛନ୍ତି ଜ୍ଞାନ-ପରାକାଷ୍ଠା ? -୫

କହୁନାହିଁ ବ୍ୟାସଦେବ, କାଳିଦାସ, କୌଟୀଲ୍ୟଙ୍କ କଥା ,
ତୁମେ ଜମା ନୁହେଁ ତାଙ୍କ ସରି - "କୁନ୍ତୀ-କବି!" ମାନ ମୋର କଥା | -୬

ଖୁବ୍ ପଢ, ପଢିଚାଲ, ବିଶ୍ୱଜୟୀ ସାହିତ୍ୟକାରଙ୍କୁ
ଶିଖି ଶିଖି କର ଅଗ୍ରସର ଧୀରେ ଧୀରେ କଲମ ଗାରକୁ | -୭

*ଲଲାଟେନ୍ଦୁ କବି ୪ ଅକ୍ଟୋବର ୨୦୧୪*

**ଆଜି ଅଗ୍ନି କାଲି ଭସ୍ମ**

ଧନ-ଜନ-ଦୀପ୍ତିମାନ-ଆରାମ-ପ୍ରଭୁତ୍ୱ
ମହାଜ୍ଞାନ, ସନାତନ ବିଧାନ ସଂଗତ :-୧

ଶବ୍ଦ-ସ୍ପର୍ଶ-ରୂପ-ରସ-ଗନ୍ଧ-ସନମାନ-
ପ୍ରତିଷ୍ଠାନ-କୀର୍ତ୍ତିମାନ-ପ୍ରୀତି-ଆହରଣ :-୨

ପାତ୍ରତା ଜୋଗୁ ଅଧୁନା ଅଛି ତୁମ୍ଭଠାରେ
କାଳ ବଳେ ଦିନେ ସବୁ ମିଶିବ ମାଟିରେ | :-୩

ଧ୍ୱଂସ ହେବେ ସୂର୍ଯ୍ୟ ଚନ୍ଦ୍ର ଜ୍ୟୋତିଷ୍କ ନିକର -
ଭଙ୍ଗୁରଯୌବନ ସୃଷ୍ଟି, ସୂକ୍ଷ୍ମ ଏ ଶରୀର | :-୪

ହିରଣ୍ୟଗର୍ଭେ ନିସର୍ଗ, ସର୍ବ ମହାଭୂତ
କାଳଚକ୍ରେ ହରାଇବେ ସଂପୂର୍ଣ୍ଣ ଅସ୍ତିତ୍ୱ | :-୫

ଦେଖି ସୃଷ୍ଟିରେ ଯୌବନ ଉନ୍ମୁକ୍ତପଲକ !
ଆଜି ଅଗ୍ନି, କାଲି ଭସ୍ମ, ଦେଖିଛ ପ୍ରତ୍ୟକ୍ଷ ?:-୬

*ଲଲାଟେନ୍ଦୁ କବି* ୨୩ ସେପ୍ଟେମ୍ବର ୨୦୧୪

## ଲୁହାର କି ସୁନାର ପିଞ୍ଜୁରୀ, ସେଥିରେ କିଯଏ?

ଦେହ ତ ଦହନ ଯୋଗ୍ୟ, ଅଗ୍ନି-ଶିଖା ତାର ଶେଷ ଗତି,
ସୁନ୍ଦର, କୁତ୍ସିତ, ରାଜା, ଭିକ୍ଷୁ, ମହାଜ୍ଞାନୀ, ମୂଢ଼ମତି, -1

ସମସ୍ତେ ଆହୂତି ହେବେ ନିଶ୍ଚେ ଦିନେ ଶ୍ମଶାନ ମନ୍ଦିରେ,
ଧର୍ମ, ପ୍ରେମ, ଶୁଦ୍ଧ ଭାବ ଥିଲେ ସଙ୍ଗେ ଯିବେ ଆର ପୁରେ!! -2

ଶାନ୍ତ ଶିବାଳୟ! ଘେନ ଆଜ ହୁଁ ମୋ ବିନମ୍ର ପ୍ରନତି,
ନିରବେ ଗାଇବି ଦିନେ ତୁମ କୋଳେ ସତ୍ୟ, ଧର୍ମ ଗୀତି || -3

ଆତ୍ମୀୟ-ବନ୍ଧୁ-ବାନ୍ଧବ, ମୋ ଛିଣ୍ଡା କବିତା ଖାତା ପୃଷ୍ଠା,
ଚିତାଗ୍ନିରେ କର ସ୍ୱଧା, ଗାଇବି ମୁଁ ସେଇଠୁ କବିତା || -4

ଲଲାଟେନ୍ଦୁ କବି ଅକ୍ଟୋବର ୨୦୧୪

## ମୃତ୍ୟୁଦଣ୍ଡାଦିଷ୍ଟ ଉଚ୍ଛୃଙ୍ଖଳଙ୍କୁ ପଦେ

ଅଭେଦ୍ୟ ଅନ୍ଧାର ମଧ୍ୟେ ଔଦ୍ଧତ୍ୟର ଉଗ୍ର ନିଦର୍ଶନ ,
ଉଚ୍ଛୃଙ୍ଖଳ ଉନ୍ମାଦନା-ମଦ-ମତ୍ତ ବିଭ୍ରାନ୍ତଯୌବନ ! -୧

ଦେବେର୍ଷ୍ୟ ମାନବ ଜନ୍ମ ଜ୍ଞାନ-ଧ୍ୟାନ-ସାଧନର ଶକ୍ତି
ସବୁ ଥାଉଁ ନ ରଖିଲ ଶୀଳତାରେ ତିଳେ ଅନୁରକ୍ତି | -୨

ଅକାଳ-କାଳ-କଳଙ୍କ ବୋଲି, କୁଳ ଚଳିଲ ଭସାଇ
ପିତାମାତାବନ୍ଧୁସଖାସହୋଦର ମୁଖେ ଲଜ୍ଜା ଦେଇ | -୩

ଫାସିର ରଶିରେ କଷି ଶ୍ୱାସରୁଦ୍ଧ ମରଣର ଡାକ
ମୌନେ କାନେ ପରିଜନେ ଶୁଣୁଥିବେ - ବେଳ ହେଲା ପାଖ | -୪

ଯେତେ ବି ବୁଝିଲେ ଯିଏ ଆତ୍ମୀୟଙ୍କ ହୃଦ-ଉଦ୍ବେଳନ
ପଥେ , ପ୍ରାନ୍ତେ ଜନପଦେ ଲାଗିଥିଲେ ଜନ-ଆନ୍ଦୋଳନ , -୫

ମୃତ୍ୟୁଦଣ୍ଡ ଦିଅ ବୋଲି ଉଠୁଥିଲେ ଦୁର୍ନିବାର ସ୍ୱର
ଦୟା , କ୍ଷମା , କୋମଳତା ତୁମ ଜୋଗୁଁ ହେବ ଛାରଖାର | -୬

"ଆଜୀବନ କାରା ଦିଅ - ନରହତ୍ୟା ପଶୁତ୍ୱାଚରଣ,"
କହୁଛି ମୁଁ , ଶୁଣେ କିଏ ? ମର ଆଶ୍ରି ଶ୍ରୀହରି ଚରଣ | -୭

*ଲଳାଟେନ୍ଦୁ କବି* ୧୧ ଅକ୍ଟୋବର ୨୦୧୪

## କୁନି ପୁଅ

ତୁମେ ବାପା ମୋର ସବୁବେଳେ ଲୋଡା କୁନି ପୁଅ କରେ ଅଳି
ଆଉ କିଏ ମୋତେ ଭୂଇଁରୁ ଉଠେଇ ଆକାଶେ ଧରିବ ତୋଳି ? -୧-

ଘୋଡା ମୋର ହେଇ ପିଠିରେ ବସେଇ ଗୁରୁଣ୍ଡିବ ଧୀରେ ଧୀରେ
ଟୁଙ୍କୁ ମୁଷିଟି କରୁଥିବ ନିତି ମୋ ହାତରେ ଥରେ ଥରେ || -୨-

ଆଙ୍ଗୁଳି ମୋ ଧରି ଧୀରେ ଧୀରେ କରି ଆଗକୁ ପକାଅ ପାଦ
ଥକିଯିବି ଯେବେ କାନ୍ଧରେ ଧରିବ, ଥାପୁଡିଲେ ଯିବି ନିଦ || -୩-

ବଡ ଯେବେ ହେବି ଇସ୍କୁଲ୍କୁ ଯିବି, ପଢିଯିବି ସବୁ ପାଠ
ଅଫିସିକୁ ଗଲେ ତୁମ ପାଇଁ ଲୁଗା, ମାଁ ପାଇଁ ଆଣିବି ପାଟ || -୪-

ଜୋତା ଛତା ସବୁ କିଣି ଆଣିଦେବି, ଜର ହେଲେ ଔଷଧ,
ତୁମ ପାଇଁ ଘଡି, ମା'ର ଶଙ୍ଖା ଚୁଡି, ପାଉଁଜି ମାପି ତା ପାଦ || -୫-

## ଔଦ୍ଧତ୍ୟ ମୋ ପରିଚୟ

ପରମାତ୍ମନ୍ ! କୁହ ତୁମେ କେଉଁ ଧର୍ମ କର ଆଚରଣ |
ହିନ୍ଦୁ ତୁମେ, ମୁସଲମାନ୍, ଇହୁଦୀ କି ବୌଦ୍ଧ, ଖ୍ରିସ୍ତାନ || -୧-
ଅନାଦି କାଳରୁ ତୁମେ ଯୁଗେ ଯୁଗେ ଦିଅ ଆଦ୍ୟଜ୍ଞାନ |
ତୁମ ସମ୍ପ୍ରଦାୟ କିନ୍ତୁ ସଭିଙ୍କଠୁ ରଖିଛ ଗୋପନ || -୨-

କୃପାସିନ୍ଧୁ ନାମ ଧରି ଏକ ବିନ୍ଦୁ ନ କରିଲ କୃପା |
ନିଜ ନୀତି ନିୟମକୁ ସଭିଙ୍କଠୁ ରଖିଲ ଅଛପା || -୩-

ସବୁ ଧର୍ମ ଅବଲମ୍ବୀ କହୁଛନ୍ତି ଈଶ୍ୱର ତାଙ୍କର |
ଭିନ୍ନ ମତେ ଉପାସନା କରିବାଟା ମହା ପାପାଚାର || -୪-

ଅକର୍ମ ବି କର୍ମ ବୋଲି କହିଅଛ ତୁମରି ଶ୍ରୀମୁଖେ |
ତୁମ ନୀରବତା କିନ୍ତୁ ଜଗତକୁ ରଖିଅଛି ଦୁଃଖେ || -୫-

ଜାଣିଲେ ତୁମର ଧର୍ମ ସମସ୍ତେ ତ ତାହାକୁ ପାଳନ୍ତେ |
କି ଆନନ୍ଦ ପାଅ ତୁମେ ଧର୍ମ ନାମେ ଏତେ ରକ୍ତପାତେ ? -୬-

ଉତ୍ତର ମିଳିବା ଯାଏ ପଚାରିବି ତୁମ ସମ୍ପ୍ରଦାୟ |
ମଲେ ବି ଛଡିବି ନାହିଁ, ଔଦ୍ଧତ୍ୟ ହିଁ ମୋର ପରିଚୟ || -୭-
*ଲଳାଟେନ୍ଦୁ କବି* ୨୭ ଜୁଲାଇ ୨୦୧୪

**ଧ୍ୱସ୍ତ ପତର ଭାଷା**

ଖଣ୍ଡିତ ଦୀପ
ଦଗ୍ଧ ସଳିତା
ଅନଳର ଶିଖା
ଜଳୁଛି ସେଥିରେ
ତିଳେ ହେଲେ ସେ ତ
କାହିଁ ଏ ଯାବତ
ପ୍ରଶମିତ ହେଇ ନାହିଁ | ୧

ପ୍ରତିଟୀ ଗଗନେ
ଦିଗ୍ବଳୟର ତଳେ --
ଭାସ୍ୱତ ସାତ-ଅଶ୍ୱ-ଚାଳିତ
ନିଖୋଜ ହେଇ ବି
ଅସ୍ତାଚଳର ଅନ୍ତରଙ୍ଗେ

ଅଳ୍ପ ଆଲୁଅ
ଏବେ ବି ଚାଲିଛି ଦେଇ |୨

ଲତା-ଗୁଳ୍ମରୁ ଶୁଷ୍କ ସୁମନ
କଳ୍ପନା ଭରା-
ଜୀବନ ଅସ୍ତ କାଳେ
ନେବ ଆଶ୍ରୟ
ହେଲାଣି ସମୟ
ସଞ୍ଚୟ କରି ବଳ
ଆଖି ମେଲି ଜଳ ଜଳ --
ଧରି ସେ ସାହସ
ଦେଉଛି ସୁବାସ
ଝଡ ବତାସରେ
ତଳେ ଝଡି ପଡି
ଏବେ ବି ତ ମରି ନାହିଁ |୩

ସାଗର କନ୍ୟା –
ଥିଲା ସେ ଧନ୍ୟା
ଛୁଟାଇ ବନ୍ୟା
କ୍ରୀଡା ନିମଗ୍ନା
ଦୁଇ ଧାରେ ଧରି  ରୂପ ଅନନ୍ୟା
ବର୍ଣ୍ୟ କାମନା
ଜାଗ୍ରତ କରି
ବିଳାସ-କୁଶଳୀ
ଛଟକ-ନିପୁଣା
ଧରଣୀ-ମଗ୍ନା

ଫଲ୍ଗୁ ଯାଇଛି ବହି;
ଦିଶୁ ନାହିଁ ସିଏ
ଲୁଚି ଲୁଚି ଦିଏ
ଜଳର କଣିକା
ମାଟିର ଗର୍ଭେ ଥାଇ |୪

ମୋତେ --
ହେଲାଣି ବୟସ,
ଆଉ କେତେ ମାସ,
କି ଅବା ବରଷ
ନିରତ ନିରସ
ମୋ ପାଶେ ଯାଇଛି ରହି;
ଉତ୍କଳ-କଳା
ଉଜ୍ଜ୍ୱଳ କରି
ତୁମରି ଗଳାରେ
ଅରପିବି ମାଳା,
ଦେଇ ଯିବି ଭାଷା -
ନାହିଁ ତିଳେ ଆଶା
ମୋର ରହି ଯାଇଥିବା
ଛିଣ୍ଡା ଖାତାର
ଅଳ୍ପ କେତେଟା
ପୁରୁଣା କବିତା
ତା'ର ଜରା-ଜର୍ଜର
ଧୂସର ବର୍ଣ୍ଣ, ମରଣାପନ୍ନ --
ସେଇ ଧ୍ୱସ୍ତ ପତ୍ରରୁ ଦେଇ !୫

***------- x --------***

*ଲଳାଟେନ୍ଦୁ କବି* ୨୭-ଅକ୍ଟୋବର-୨୦୧୪

## ବିଗତଯୌବନେ କେମିତି ଲେଖିବି

ପ୍ରେମ କବିତା ବି ଲେଖିଥିଲି ପିଲା ବେଳେ
ଏବେ କେବେ କେବେ ମନେ ପଡେ
ମୁହଁ ଅନ୍ଧାରେ, କେବେ ବା ଶୀତ ସକାଳେ
ମୋର ପୁରୁଣା ଖାତା ଟି ଏକା ଏକା କାଢି ପଢେ |

କର୍ମ-କଷଣ ଚାପରେ ଦିବସ ରାତି
ଚାରି ଦଶନ୍ଧି କଲି ଅଜ୍ଞାତବାସ
ଅବସରେ ଏବେ ବିଗତ ମୋ ଯୌବନେ
ପୁଣି ଲେଖିବି କବିତା, କରିଛି ଦୁଃସାହସ |

ବନ୍ଦେବି ମା ତୁମରି ଚରଣ ଧୂଳି -
କଣିଚାଏ ଏଇ ବିଦାୟ ବେଳେ ଯେ ଦେଲ,
କୋଟି କୋଟି ଘେନ ପ୍ରଣାମ ଏ ଅଧମର,
ହେଲେ - ଯୌବନ ଗତେ
ହତ-ବସନ୍ତେ
ପାରିବି କି ଲେଖି
ଗୀତ ମନଲାଖି,
ଏବେ ଯା ଲେଖୁଛି
ଦିନେ କାଳେ କିଛି,
ମୁଁ ଜାଣେ ସେଥିରେ କଣ୍ଟା ବହୁତ
କାଁ ଭାଁ ଥିଲେ ଥିବ ଗୋଟେ ଅଧେ ଫୁଲ |

ଉତ୍କଳବାସୀ ମୋ ପ୍ରିୟ ପଡୋଶୀ
ତୁମ ମନ ଖୁସି କରିବାର ଅପଚେଷ୍ଟା
କରୁଅଛି ଏବେ, ନ ଧରିବ କେବେ,
ହେଲେ ରୁଚିହୀନ ମୋ କବିତାମାନ
ମୁ ଏକ ସାମାନ୍ୟ ଜନ ଗୁଣହୀନ
କହି ରଖେ ଶୁଣ, ମୁଁ ନୁହଁ ସାହିତ୍ୟ-ସ୍ରଷ୍ଟା |

*ଲଲାଟେନ୍ଦୁ କବି* ୨୮-ଅକ୍ଟୋବର-୨୦୧୪

**ବର ଯାଚନା**

ବ୍ୟସଦେବ ପାଦ-ଧୂଳି ଶିରେ ବୋଳି ଚିତାଗ୍ନିରେ ଜଳି ପାରନ୍ତି ଯେବେ
ପ୍ରାପ୍ତ-ପ୍ରାପ୍ତବ୍ୟ ମୁଁ, ଜ୍ଞାତ ମୋ ଜ୍ଞାତବ୍ୟ, କୃତ-କର୍ତ୍ତବ୍ୟ ବି ହୁଅନ୍ତି ଭବେ
|୧

ବୁଦ୍ଧ ଭଗବାନ- ବଚନ ସ୍ପନ୍ଦନ ଆଜି ବି ପବନ ରଖିଛି ଧରି
ଏ ଅଧମ କର୍ଣ୍ଣ କିଞ୍ଚିତ ଶ୍ରବଣ ସେ ସୁଧା-ବଚନ ପାରନ୍ତା କରି | -
୨

କେତେ ମହା ଯତି ଯାହା ପୁଣ୍ୟ ଗୀତି ଏ ବିଶ୍ୱ-ଭରତୀ ଆନନ୍ଦେ ବୋଲେ
କି ତାଙ୍କ ମନନ, ଅମୃତ-ମନ୍ଥନ କରନ୍ତି ଚିନ୍ତନ ସାମର୍ଥ୍ୟ ଥିଲେ | -
୩

ଦିଅ ପ୍ରାଣପତି ଏ ଅଧମ-ମତି ଏତିକି ଶକତି ଆକୂଳେ ମାଗେ
ହେ ବିଶ୍ୱ-ଆଧାର, କୃପା-ପାରାବାର, ଦିଅ ଏହି ବର ଅଭାଗା ଭାଗଗ୍ୟେ
|୪

*ଲଲାଟେନ୍ଦୁ କବି*   ୩୦ ଜୁଲାଇ ୨୦୧୪ ୍

## ମୋତେ ଧିକ୍କାର

ବାମ ହାତ ପାଖେ ମୃଗ କରିଲେ ଧାବନ,
ସକାଳୁ ଦର୍ଶନ କଲେ କାଳିଆ ବ୍ରାହ୍ମଣ,        -୧

ଝଟିପିଟି ପଡେ ଯଦି ମୁଣ୍ଡ କି ଜଙ୍ଘରେ,
କୁଣ୍ଡାଇ ହେଉଛି କେଉଁଠି ଅଙ୍ଗରେ,        -୨

ଏ ସବୁରେ ଶୁଭ ଆଉ ଅଶୁଭ ବିଚାର,
ତା ଉପରେ ନବଗ୍ରହ - କିଏ କେଉଁ ଘର,        -୩

ରବି, ଚନ୍ଦ୍ର, ବୁଧ, ଶକ୍ର, ଗୁରୁ, ବୃହସ୍ପତି,
ମଙ୍ଗଳ ସାଙ୍ଗକୁ କୋପୀ ଶନୈଶଚର ଗତି,   -୪

ନଷ୍ପ୍ରାଣ, ମନ-ହୃଦୟ-କର୍ମେନ୍ଦ୍ରିୟହୀନ
କରନ୍ତି ପ୍ରୀତି, ଅପ୍ରୀତି, ଭାଗ୍ୟ-ସଞ୍ଚାଳନ !        -୫

ଅସ୍ତିତ୍ୱ ବିହୀନ ରାହୁ, କେତୁ ଭାଗ୍ୟପତି -
ଗ୍ରହଣୋପରାଗ ହେତୁ କାଳ୍ପନିକ ସ୍ଥିତି |        -୬

ନିର୍ବୋଧ ପ୍ରାଣୀଙ୍କ ସଙ୍ଗେ ନିର୍ଜୀବ ଜ୍ୟୋତୋଷ୍କ
କର୍ମ ନୁହେଁ, ଏହିମାନେ ଭାଗ୍ୟ-ନିର୍ଦ୍ଧାରକ |  -୭

ଏ ସଭିଙ୍କ ହାତେ ଯଦି ମୋ ଭବିଷ୍ୟ-ଡୋର,
ମାନବ ଜନ୍ମକୁ ମୋର ସହସ୍ର ଧିକ୍କାର |        -୮

*ଲଲାଟେନ୍ଦୁ କବି*  ୦୨ ଅଗଷ୍ଟ ୨୦୧୪ ୍‌

## ପ୍ରମାଞ୍ଜଳି

ବିନା ବିଚ୍ଛେଦରେ କାହିଁ ମିଳନ-ଆନନ୍ଦ ?
ବଂଶୀ ମଧୁତମ ଯେବେ ଧରଣୀ ନିଃଶବ୍ଦ |  -୧

ଗରିବର ମହା ସୁଖ ଆଗତ-ସମ୍ଭାରେ,
ରାଜାର କି ସୁଖ କେବେ ରହିଲେ କୁଟୀରେ ?  -୨

ପଢି ଖୁସି ପାଇଁ ଲେଖୁଥିଲି ସତ୍ୟ କଥା,
ଏବେ କିନ୍ତୁ ଘରେ ମୋର ଜୀବନ୍ତ କବିତା |  -୩

ମୋ ପ୍ରେମେ ଆପ୍ଲୁତା ସାଧ୍ୱୀ ଧ୍ୟାନୀ ପ୍ରଣୟିନୀ
ଉପଗତା, ଏବେ ଆଉ କି କାର୍ଯ୍ୟେ ଲେଖନୀ ?  -୪

*ଲଲାଟେନ୍ଦୁ କବି* ୧୪/୧୭ ଅଗଷ୍ଟ ୨୦୧୪ ୍‌

## ତ୍ରିଦେବୀ ଅର୍ଚ୍ଚନା

ଗୃହଲକ୍ଷ୍ମୀ ସଙ୍ଗେ ଗୃହେ ଦେବୀ ସରସ୍ୱତୀ
ସ୍ୱାଗତ କରନ୍ତେ ପୁଣି ସେ ଦେହେ ପାର୍ବତୀ |-୧

ଦେବୀ ପହଞ୍ଚି କହନ୍ତି ବୁଝାଅ ପୁରାଣ,
ଗୀତା-ଭାରତ-ଦର୍ଶନ-ସୂକ୍ତି-ରାମାୟଣ |  -୨

ସେବିଲି ଶ୍ରୀ ନାରାୟଣ, ଲକ୍ଷ୍ମୀ ପତିବ୍ରତା
ଆହାର ବିରନ୍ତି ଦେଖି ଉଦରର ବ୍ୟଥା |            -୩

କଳାପ୍ରେମୀ ଜାଣି ଦିବ୍ୟା ଶାରଦା ଭାରତୀ,
ଶ୍ରଦ୍ଧା ଯୋଗୁ ଏ ଦୁହିଙ୍କ ମୋ ଉପରେ ପ୍ରୀତି |      -୪

ସେ ଏକା ଦେହରୁ ଦେବୀ ଉମାଙ୍କ ଆଦେଶ
କିପରି ପାଳିବି ? ମୁଁ କି ଶ୍ରୀ ମହାମହେଶ ?  -୫

କଥା ଦେଲି, ସଦ୍-ଗ୍ରନ୍ଥରୁ ପଢି ଦେବି ବାଣୀ,
ନିର୍ବଳ ମୁଁ, ଆହେ ଭଗ୍ନୀ, ଜାୟା ଓ ଜନନୀ |-୬

*ଲଲାଟେନ୍ଦୁ କବି*          ୦୮ ଅଗଷ୍ଟ ୨୦୧୪ ଃ

**ମନ୍ଦାକିନୀ ଉର୍ବଶୀ**

ମନ୍ଦାକିନୀର ସ୍ୱଚ୍ଛ ସଲିଳ ତୀରେ
ସଜଳ-ନୟନା କ୍ରନ୍ଦିତା ଉର୍ବଶୀ
ନୃତ୍ୟ-ନିପୁଣା ଗୀତ ମୂର୍ଚ୍ଛନା ତାଳେ
ମନ୍ତ୍ର-ମୁଗ୍ଧ କରି ଦେବ, ରବି, ଶଶୀ |       -୧

ଯୁଗଯୁଗାନ୍ତ ସାଧନା ଚାଲିଲା ସତ,
ଆଉ ଉନ୍ନତ ନ ହୁଏ ନୃତ୍ୟ-କଳା;
ସଭିଏଁ ତୁଷ୍ଟ, ସଭାରେ ସୁସ୍ୱାଗତ,
ତଥାପି ବ୍ୟଥିତା କୋମଳା ଭୃତ୍ୟାବାଳା |          -୨

ଶିକ୍ଷଣହୀନ ତଟିନୀ ମନ୍ଦାକିନୀ,
କ୍ଲାନ୍ତିରହିତା ମଧୁର ନୃତ୍ୟ-ଗୀତେ,
ଦିନୁଦିନ ତା'ର ମଧୁରିମା ବଢେ ପୁଣି,
ଆହ୍ଲାଦିତା ସେ ଅହରହଃ ଦିବା ରାତେ | -୩

ବ୍ଯସ୍ତ-ବିକଳେ ନର୍ତ୍ତକୀ ବସି ଭାଳେ
ନୃତ୍ୟ-ଶିଳପ କର୍ତ୍ତବ୍ୟ କରେ ନିତି -
ଉଲ୍ଲାସେ ଭରି ଗଭୀର ଅନ୍ତରାଳେ
କଳାରେ ବୁଡିଲେ ସୁଖର ସିନା ପ୍ରତୀତି | -୪

ଦେବଙ୍କ ଆନନ୍ଦ ସକାଶେ କି କାଳେ କାଳେ
ବନ୍ଧ ଦାସୀ ମୁଁ ଥିବି ଚିର ଯୁବନୀ ?
ଶ୍ରାନ୍ତ ଶରୀରେ ମୁଦ୍ରା କଲେ ବି ଛଳେ,
ମନ୍ଦାକିନୀଠୁ ହାରିଛି ମୁଁ ଅଭାଗିନୀ ! -୫

*ଲଳେନ୍ଦୁ କବି* ୦୭ ଅଗଷଟ ୨୦୧୪ ୍

## ମରିଚୀରେ ସରିଚି

ଏ କ୍ରତୁ ପୁଲହ ପୁଲସ୍ତ୍ୟ ଓ ଅତ୍ରି ଅଙ୍ଗିରା ବଶିଷ୍ଠ ମରୀଚି,
ସାତ ଋଷିଙ୍କର ତାରକା ମଣ୍ଡଳ ଏହିଠାରେ ବାବୁ ସରିଛି | -୧

ଶେଷ ଦୁଇଟିକୁ ଯୋଡି ଯେବେ ବାପା ଟାଣି ଦେବୁ ରେଖା ଏକ,
ଉଜ୍ଜ୍ୱଳ ନକ୍ଷତ୍ର ଦେଖିବୁ ଯାହା ସେ ଧ୍ରୁବତାରା ମନେ ରଖ | -
୨

ସୂର୍ଯ୍ୟ ଚନ୍ଦ୍ର ଗ୍ରହ ଜ୍ୟୋତିଷ୍କ ନକ୍ଷତ୍ର ସଭିଏଁ କରନ୍ତି ଗତି,
ଏକା ଧ୍ରୁବତାରା ସ୍ଥିର ସବୁଦୁନେ ଉତ୍ତର ଦିଗେ ତା ସ୍ଥିତି |        -୩

ଧ୍ରୁବତାରା ପରି ଅଟଳ ରହିବୁ ନୀତିରୁ ହଟିବୁ ନାହିଁ,
କିଛି ନ ଦେ ମୋତେ, ମଲେ ନିଆଁ ଦେବୁ, ଶେଷ ଇଚ୍ଛା ଦେଲି କହି | -
୪

ବିଲୁତ ବୟସେ ବୁଝିଲି କିଛି ମୁଁ ପିତାଙ୍କ ଶେଷ ବଚନ,
ଛାତେ ସପ ପାରି ଶୋଇଥିଲୁ ଆମେ, ସେ ଥିଲା ଗ୍ରୀଷମ ଦିନ |-୫

ବଡ ହେଲି ଯେବେ ଛାଡ ଭିଟାମାଟି ଆସିଲି ବିଦେଶ କରି,
ବୁଡି ରହିଲି ମୁଁ ଜଞ୍ଜାଳ ଭିତରେ, ଧରି ଦୁଇ କନ୍ୟା, ସ୍ତରୀ |        -
୬

ଶିଶୁ କନ୍ୟା ଦୁହେଁ ଶିଖିଲେ ମୋ' ଠାରୁ ଚିହ୍ନି ସେହି ଗ୍ରହ ତାରା,
ବଡ ଝିଅ ଟି ତା' ଜେଜେବାପାଙ୍କର ସାଜିଲା ଦୁଃଖ-ପାଶୋରା | -୭

କାଳର କବଳେ ଜେଜେବାପା ତା'ର ଗଲେ ଦୁନିଆଁରୁ ଚାଲି,
ଜୀବନରେ କିଛି ଦେଇ ତ ନ ଥିଲି, ମୁଖାଗନି ଟିକକ ଦେଲି |   -୮

କିଛି ଦିନ ଗତେ ପୁଣି ସେଇ ଛାତେ ଶୋଇଥିଲୁ ଆମେ ଯେବେ,
ଝିଅ ପଚାରୁଛି -ଜେଜେବଶାପା ବି ତ ତାରା ହେଇ ରହିଥିବେ;  -୯

ସପ୍ତର୍ଷି ମଣ୍ଡଳ ନକ୍ଷତ୍ର ଭିତରେ ଜେଜେବାପା କିଏ ମୋର ?
କହି ଦିଅ ବାପା ମନ ମୁଁ କରିଛି, କରିବି ତାଙ୍କୁ ଜୁହାର |        -୧୦

ଝିଅ କଥା ଶୁଣି ଜିଭ ଶୁଖି ଗଲା କହିଲି ଏତିକି ଭାଷା -
ମରୀଚି ମାଆ ସରିଚି ରେ ସବୁ, ନ କର ଆଉ ସେ ଆଶା |            -
୧୧

ଲଳାଟେନ୍ଦୁ କବି            ୨୩ ଜୁଲାଇ ୨୦୧୪   ◌୍

## ନିତ୍ୟ ବାରମ୍ବାର

"ଅନିତ୍ୟ ସଂସାର ମଧ୍ୟେ ସକଳ ଅସାର |
ସାର ମାତ୍ର ସାଧିବାର ପର ଉପକାର ||          -୧
ଯିଉଁ ମୁହୂର୍ତ୍ତରୁ ତାହା ନ ପାରିବା କରି |
ଯିବା ଦେଇ ଆଶିର୍ବାଦ ଭୀଷ୍ମଦେବ ପରି ||        -୨
ହେଉ ସେ ଶରର ଶଯ୍ୟା, ଫୁଲ କି କଣ୍ଟାର ,
ତେଜି ତାକୁ, ଧରି ପୁଣି ନବ କଳେବର ||        -୩
ଫେରିବା ଏଇଠି ଘେନି ଶକ୍ତିର ଭଣ୍ଡାର -
ଲାଗି ରହୁ ଏ ପ୍ରକ୍ରିୟା ନିତ୍ୟ ବାରମ୍ବାର ||        -୪
ନିତ୍ୟ ବାରମ୍ବାର ବୋଲୁଥିବା ଦିବ୍ୟ ମନ୍ତ୍ରମ୍ -
ହରିଶରଣମ୍, ଶ୍ରୀହରି ! ଶ୍ରୀ-ହରି ଶର\ଣମ୍ ||    -୫
ଲଳାଟେନ୍ଦୁ କବି            ୦୬ ସେପ୍ଟେମ୍ବର ୨୦୧୪     ◌୍

## ମାଧୁର୍ଯ୍ୟ ଦର୍ଶନ

ଚଲା ବାଦଲର ଶୁଭ୍ର ଓଢଣା ତଳେ
ହେମ ଚନ୍ଦ୍ରିକା ମେଲି ଦେଇ ଖେଳେ ଚାନ୍ଦ,
ବିଭାତ ପ୍ରଭାତ ଶୋଭିତ ସୂର୍ଯ୍ୟାଲୋକେ
ଜଳସ୍ଥଳନଭେ ନବଜୀବନ ଆନନ୍ଦ || -୧

ଦୃଷ୍ଟିବିହୀନ ନିଷ୍ପାପ ଜନ ଜାଣେ -
ତାରକା-ତପନ-ଚନ୍ଦ୍ରକିରଣ ମିଛ,
ଦର୍ପଣ ଏକ ଅକାରଣ ପ୍ରସାଧନ,
ମୂଲ୍ୟବିହୀନ ଅଭିନୟ ରଙ୍ଗମଞ୍ଚ || -୨

ଅଧ୍ୟାତ୍ମ-କଥନ-ଶ୍ରବଣ-ରହିତ ଜନ
ପରିବର୍ତ୍ତନ ଘଟର ମାନିବ ନାହିଁ,
ମର୍ମଫଳର ବିଧାତା ଜଗତପାଳ
ଶୁଣିଲେ କହିବ - ଈଶ୍ୱର କିଏ କାହିଁ ?-୩

ଲଲଟେନ୍ଦୁ କବି 04 ଅଗଷ୍ଟ ୨୦୧୪

## ସେଇଠି କେମିତି ହେବ

ଲିଭି ଲିଭି, ଲିଭି ଯାଇନି ଏବେ ବି କଳ୍ପନା-ଦୀପଶିଖା,
ଅଳ୍ପ ହେଲେ ବି ଲେଖୁଛି ଯା'ଅଛି ସ୍ମୃତିରେ ଜ୍ୟୋତିର ରେଖା | -୧
ପିଲାବେଳ କଥା ଲାଗେ ମିଠା ମିଠା, ଅଧା ଅଧା ମନେହେଲେ,
ଦିଗ୍-ବଳୟ ବି କେତେ ମଧୁମୟ ଛାଇ-ଆଲୁଅର କୋଳେ | -୨
ସେଇଥି ପାଇଁ ତ ସୁମଧୁର ଗୀତ ପ୍ରଭାତ-ସଞ୍ଜ ବେଳେ,
ଦୂର ପରିଜନ ଖବର ମଧୁର ଅଧା ଲିଭା ଚିଠି ଗାରେ | -୩
ଲିଖନ ପଠନ ମଧୁର ଗଭୀର ଅଧା ଅଧା ରାତି କାଳେ,
ବଂଶୀର ତାନ ଜିଣି ନିଏ ମନ ଉଦୁ ଉଦୁ ଖରା ବେଳେ | -୪
ନବ ବଧୂ ମୁଖ କେତେ ମଧୁ ଦେଖ ଅଧା ଓଢଣା ଭିତରେ,
ପ୍ରିୟା-ପ୍ରତିଶ୍ରୁତି ଲାଗେ ମଧୁରାତି ଭୀତିଭରା ପୀରତିରେ | -୫
ସେ ପାରି ଡାକରା ରହି ରହି ଆସେ କାନେ ପଶେ ଅଧା ଅଧା,
ଅଧା ଶୁଣି ଅଧା ଶୁଣେ ନାହିଁ - କରି ସାରିନି ମୁଁ ପାଟ ପିନ୍ଧା | -୬

କହେ ଶାସ୍ତ୍ରଜ୍ଞାନ - ଫେରି ଯା ବହନ, ଏଠୁ ନିଅ କାଢି ମନ,
ଛାଡି ଛାଡି, ଛାଡି ଦେଇ ପୂରାପୂରି ପାରୁ ନାହିଁ ବନ୍ଧନ | -୭
ଯିବାକୁ ଆତୁର, ବେଳ ତ ଉଛୁର, ଯିବି ଆଜି ଅବା କାଲି,
ଭୁଲିବନି କେହି, ମୁଁ ବି ଭୁଲୁ ନାହିଁ, ଗଲେ ବି ଆସିବି ବୁଲି | -୮
ତୁମ ସାଙ୍ଗେ ଏଠି ନିତି ବସି ଉଠି, ମନ ସେଠି ପରପାରେ,
ସେଇଠି ଯାଇକି ସେଇଆ ହେବ କି? ମନ ଥିବ ଦୁଇଠାରେ ! -୯
*ଲଲାଟେନ୍ଦୁ କବି ୦୪ ନଭେମ୍ବର ୨୦୧୪* ଼

.

ସର୍ବ ବ୍ରହ୍ମମୟ

ଅର୍ପଣାଦି ବ୍ରହ୍ମ, ବ୍ରହ୍ମ ଅଗ୍ନି, ହବ୍ୟକର୍ତ୍ତା ବ୍ରହ୍ମାହୂତି
ବ୍ରହ୍ମକର୍ମସମାଧିସ୍ଥ ବ୍ରହ୍ମପ୍ରାପ୍ତ, ବ୍ରହ୍ମେ ଗତିସ୍ଥିତି ॥1

ପୂଜ୍ୟ ପୂଜକ ପୂଜନ ପୂଜାବିଧି ପୂଜା-ଉପଚାର
ଯଜ୍ଞ ଯଜ୍ଞୀ ଯଜମାନ ଯଜ୍ଞଶେଷ ଯଜ୍ଞପରିସର ॥ 2

ସ୍ତବ ସ୍ତାବ୍ୟ ସ୍ତବପାଠ ସ୍ତବଶ୍ରୋତା ସ୍ତବ-ଶ୍ରୋତ୍ରେନ୍ଦ୍ରିୟ
ସ୍ତାବକ, ସ୍ତବନିର୍ଘୋଷେ ସ୍ତବାକାଶ ସର୍ବ ବ୍ରହ୍ମମୟ ॥3

ଦ୍ରବ୍ୟଯଜ୍ଞ ତପୋଯଜ୍ଞ ଯୋଗଯଜ୍ଞ ଜ୍ଞାନଯଜ୍ଞ ତଥା
ସ୍ୱାଧ୍ୟାୟାଦି ନାନା ଯଜ୍ଞ, ସର୍ବଯଜ୍ଞେ ସର୍ଭମୟ କର୍ତ୍ତା ॥4

ବାଣୀପୁତ୍ର 2014

.

**ଯଜ୍ଞାନ୍ନ**

ଯଜ୍ଞଶିଷ୍ଟ-ପୁଷ୍ଟ ଶ୍ରେଷ୍ଠ ସର୍ବପାପ-ବିନିର୍ମୁକ୍ତ |
କେବଳ ସ୍ୱହିତେ ଭୋକ୍ତା ପାପୀ ଭୁଞ୍ଜନ୍ତି ପାତକ || :-୧-

ଅନ୍ନଭୂତ ଭୂତରାଜି, ପର୍ଜନ୍ୟ ଅନ୍ନ-କାରଣ |
ଯଜ୍ଞ-ଉଦ୍ଭୂତ ପର୍ଜନ୍ୟ, ଯଜ୍ଞ ବେଦ ଉଚ୍ଚାରଣ || :-୨-

ବ୍ରହ୍ମା-ମୁଖୋଦ୍ଭୂତ ବେଦ, ବ୍ରହ୍ମୋଦ୍ଭୂତ ପ୍ରଜାପତି |
ସେ କାରଣେ ଯଜ୍ଞେ ନିତ୍ୟ-ସର୍ବଗତ-ବ୍ରହ୍ମ-ସ୍ଥିତି || :-୩-

*ଲଳାଟେନ୍ଦୁ କବି* ୩ ସେପ୍ଟେମ୍ବର ୨୦୧୪ **{ଗୀତା ୩/୧୩-୧୪-୧୫}**

**ମଦ୍ବର୍ତ୍ମାନୁବର୍ତ୍ତନ୍ତେ....**

ସର୍ବବ୍ୟାପ୍ତ ଅନାସକ୍ତ ନିର୍ବିକାର ନିର୍ଲିପ୍ତ କେଶବ |
କର୍ମହୀନ କ୍ରିୟାରତ, ସର୍ବେ ଅନୁସରନ୍ତି ମାନବ || - ୧

ବିଭିନ୍ନ ଅର୍ପଣ-ପନ୍ଥା ବିଭିନ୍ନ ଅର୍ପଣ ବିଦ୍ୟମାନ |
ସର୍ବମତେ ସର୍ବଭୂତ ଏକବ୍ରହ୍ମଦିଗେ ଚଳମାନ || -୨

[ଭାଷାନ୍ତରେ]
ଜନାଦି ପନ୍ଥା ଭିନ୍ନ: ସର୍ବଭୂତ ଗତି ଏକସ୍ଥାନ
ଯେ ଭାବେ ଭଜନ ବସ୍ର ! ସେହି ଭାବେ ପ୍ରାପ୍ତ ଜନାର୍ଦନ || -୨

*ଲଲାଟେନ୍ଦୁ କବି*........ ୧୯ ଅଗଷ୍ଟ ୨୦୧୪ ଶ୍ରୀ ହରିଶରଣମ୍

# ଏଣିକି ମଞ୍ଜୁବାଳା କବି

ଏଣିକି ମଞ୍ଜୁବାଳା କବି

**ବିଶ୍ୱମୟ-କବି**

ବିଶ୍ୱମୟ ତୁମେ କବି
ଲେଖନୀରେ ତୁମେ ଗଢି ଚଲିଯାଅ
ଅଗଣିତ ପ୍ରତିଛବି ।

ଶ୍ମଶାନେ ବିରଚ ଅମୃତମୟ ଗୀତି
ସଂସାର-ସାଗରେ ପ୍ରେମ-ଦୁଃଖର ଛବି;
ଆକାଶରୁ ତୋଳ କୁସୁମ ଭଳି କି ଭଳି
ଶୂନ୍ୟେ ଖେଳାଅ ରଙ୍ଗୀନ ଦୀପାବଳୀ;
ଛନ୍ଦ, ରାଗରେ ସର୍ଜନା କର
ଶାଶ୍ୱତ ଗୀତି ମାଳା
ସୁଶୋଭିତ କର ଅଳଙ୍କାରରେ
ବିଶ୍ୱ-ଭାରତୀ ଗଳା ।

ବିଶ୍ୱମୟ ତୁମେ କବି
ଲେଖନୀରେ ତୁମେ ଗଢି ଚଲିଯାଅ
ଅଗଣିତ ପ୍ରତିଛବି ।

ବେଦ-ଉପବେଦ, ଗ୍ରନ୍ଥ, ମହାପୁରାଣ,

ସୂକ୍ତି ପାଖରୁ ବିଜ୍ଞାନ ଯାଏ

ସବୁଥିରେ ଦିଅ

ଚଳଚଞ୍ଚଳ ସ୍ନିଗ୍ଧ ମଧୁର ପ୍ରାଣ;

କଳ୍ପନାତୀତ ବିଶାଳ ସୃଷ୍ଟି କୋଳେ

ଅଣୁ ଭିତରେ ବି ତୁମ କଳ୍ପନା ଖେଳେ;

ଅସୀମ-ବିରାଟ କ୍ଷୁଦ୍ରରୁ କ୍ଷୁଦ୍ରତର

ତୁମେ ସବୁଠାରେ ସୂକ୍ଷ୍ମ-ଶରୀରେ

କେମିତି ପ୍ରବେଶ କର?

ଛନ୍ଦ-ରାଗରେ, ଅଳଙ୍କାରରେ

ଲେଖନୀ କେମିତି ରଖ,

ଗ୍ରହରେ, ତାରାରେ, ରବି-ଶଶଧରେ

ଦେଇ ଚାଲିଥାଅ ଅଭିନବ ରୂପରେଖ ?

ବିଶ୍ୱମୟ ତୁମେ କବି

ଲେଖନୀରେ ତୁମେ ଗଢି ଚଲିଯାଅ

ଅଗଣିତ ପ୍ରତିଛବି |

*(ମଞ୍ଜୁବାଳା କବି) ଓଁ ଶାନ୍ତିଃ...* 26-Oct-2014

**ଶରଣଂ ଗଚ୍ଛାମି**

କେତେ ଦୂର କେତେ ପଥ ଅତିକ୍ରମ କଲି

ପଥ ପ୍ରାନ୍ତେ କ୍ଳାନ୍ତ ହୋଇ ଶୋଇ ମୁଁ ପଡିଲି | -୧

ସ୍ୱପ୍ନରେ ଦେଖିଲି କାହିଁ ଲଭା ଉଦ୍ଗୀରଣ

କେଉଁଠାରେ ଅବା ବହେ ମଳୟ ପବନ | -୨

କୋଟି କୋଟି ଲୋକେ ପୁଣି କାହିଁ ଯୁଦ୍ଧେ ରତ

କେଉଁଠି ବା ବାଜୁଥାଏ ଶାନ୍ତିର ସଙ୍ଗୀତ | -୩

କେଉଁଠି ନାରୀର ବସ୍ତ୍ର ହେଉଛି ହରଣ,

ନାରୀ ଜାଗରଣ ପାଇଁ କେଉଁଠି ଭାଷଣ | -୪

ବିଶ୍ୱାସର କେଉଁଠାରେ ଚାଲିଛି ଦହନ

କାହିଁ ଅବା ଲାଗିଥାଏ ପ୍ରେମ ସମ୍ଭାଷଣ | -୫

କେତେବେଳେ ସ୍ୱପ୍ନ ମୋର ଭାଙ୍ଗିଲା କେଜାଣି,

ଦୂରୁ ଶୁଭୁଥିଲା - ବୁଦ୍ଧଂ ଶରଣଂ ଗଚ୍ଛାମି | -୬

*(ମଞ୍ଜୁବାଳା କର)* ଅଗଷ୍ଟ ୨୦୧୪

**ଶେଷ ଦେଖା**

କ୍ଷଣକୁ କ୍ଷଣ ସରି ସରି ଯାଏ ଜୀବନର ପ୍ରତି କ୍ଷଣ

ଲିଭି ଲିଭି ଯାଏ ଜୀବନ ପ୍ରଦୀପ, ବ୍ୟାକୁଳିତ ହୁଏ ମନ | -୧

ଭାସି ଭାସି ଆସେ ସ୍ମୃତିର ପଟଳେ ଯୌବନର ସେହି ଦିନ |

କିଏ ଅବା ଥିଲା ସପନେ ମୋହର ଥିଲି କି କାହା ସପନ? -୨

ସରିଯାଇଅଛି ନାଟକ ମୋହର ଚାଲିଲି ମୋ ନିଜ ପଥେ,

ଜୀବନର ଏହି ଶେଷ ଦେଖା ମୋର କରେ କର ଯୋଡି ନମସ୍ତେ | -୩

ଧୀରେ ଧୀରେ ସବୁ ଭାସିଯାଏ ମନେ ଯେପରି ଏକ ମୁହୂର୍ତ୍ତ,

ସବୁ ଭାବନାକୁ ତ୍ୟାଗ କରିଦେଇ ହେଲି ମୁଁ ଶରଣାଗତ | -୪

*(ମଞ୍ଜୁବାଳା କର୍)* ଅଗଷ୍ଟ ୨୦୧୪ ଓଁ ଶାନ୍ତିଃ

## ସୃଷ୍ଟି

ନିମିଷକ ଲାଗି ନିମିଷକେ ତୁମେ ସର୍ଜନା କଲ ଜଗତ
ଅନ୍ତରେ ଅନ୍ତରେ ରହିଅଛ ପ୍ରଭୁ ସର୍ବଦିଗେ ସର୍ବବ୍ୟାପ୍ତ | -୧
ଲୁଚି ଲୁଚି କରି ଖେଳୁଥିଲ ତୁମେ ଖେଳୁଥିବ ଅବିରତ
ପ୍ରାଣବାୟୁ ଭରି ସବୁରି ହୃଦୟେ କରୁଅଛ ଆତଜାତ | -୨
ଅଗଣିତ ପିଣ୍ଡେ ଦର୍ପଣ ସମାନେ ଦେଖ ନିଜ ପ୍ରତିଛବି
କର୍ତ୍ତା ହେଇ ତୁମ ଅକର୍ତ୍ତାଚତଣ ଦେଖେ ଖାଲି ଅନୁଭବି | -୩
ତୁମରି ଇଚ୍ଛାରେ କଲ ତୁମେ ସୃଷ୍ଟି, କେ ଜାଣେ ତୁମର ମାୟା,
ମାୟା ଭଉଁରୀରେ ବୁ ବାଇଛ ବିଶ୍ୱ, ଦିଶେ ନାହିଁ ତୁମ ଛାୟା | -
୪
ଦୟା କର ଯା'ରେ ଦିଅ ଦିବ୍ୟଦୃଷ୍ଟି, ଦେଖେ ସେ ତୁମ୍ଭଙ୍କୁ ନେତ୍ରେ,
ବିଶ୍ୱମୟ ହୋଇ ତୁମ୍ଭସଙ୍ଗେ ମିଶି ରହେ ସଦାନନ୍ଦ ଚିତ୍ତେ | -୫
*(ମଞ୍ଜୁବାଳା କର୍)* 21-10-2014 ଓଁ ଶାନ୍ତିଃ

## ପୃଥିବୀ

ପରମ "ଓଁ"କାରେ ଗଢିଅଛ ମୋତେ ଅଦ୍ୟ-ପ୍ରାନ୍ତ-ଲୀଳାଭୂମି
ସ୍ଥବର ଜଙ୍ଗମ ସଭିଙ୍କୁ ଆଦରି ଉଠିଅଛି ନଭ ଚୁମି | -୧
ବେଦ ଶ୍ରୁତି ଧ୍ୱନି ମୋହରି ବୁକୁରେ ଉଚ୍ଚାରି ଶତ ତରଙ୍ଗେ
ଋଷି, ମହାଋଷି, ଧ୍ୟାନୀ, ମହାଜ୍ଞାନୀ, ମିଶନ୍ତି ସେ ବ୍ରହ୍ମ ସଙ୍ଗେ | -୨

ବାଲି ରେଣୁଠାରୁ ତୁଙ୍ଗ ଶିଖର, ଆଗ୍ନେୟଗିରି, ସାଗର,
ଗଙ୍ଗା, ଗୋଦାବରୀ, ସିନ୍ଧୁ, ମହାନଦୀ ନୃତ୍ୟେ ତୋଳନ୍ତି ଝଙ୍କାର | -୩
ମୋହରି ବୁକୁରେ ସୃଷ୍ଟି, ବିନାଶ ଗଢୁଅଛ ନିତି ପ୍ରତି
ଭେଦଶୂନ୍ୟ ମୁଁ, କୋଳେ ଧରି ସବୁ ସଦା କରୁଛି ପ୍ରଣତି | -୪
ସର୍ବଂସହା କରି ଗଢିଅଛ ମୋତେ ହେ ପ୍ରିୟ ପରମ ପିତା!
ଭାଷା ନାହିଁ ଯେଣୁ ସ୍ତବ୍ଧେ ମଉନେ ଜଣାଉଛି କୃତଜ୍ଞତା | -୫

*(ମଞ୍ଜୁବାଳା କବି)*

22-10-2014

**ଅନ୍ତର୍ଜାଲ[ନେଟ]ର ମହିମା**

"ବସୁଧୈବ କୁଟୁମ୍ବକମ୍" ର ମହିମା
ଇଣ୍ଟରନେଟ୍ ବଢାଇଛି ତାହାର ଗାରିମା |-୧
ଉଦ୍ ଘୋଷିତ ବାକ୍ୟ ଅଜି ହୋଇଛି ସଫଳ
ଫେସ୍ ବୁକ୍ ରେ ସଭିଏଁ ହୋଇଛନ୍ତି ଠୁଳ |-୨
ଏକ ପରିବାର ପରି ସଭିଏଁ ଚଳନ୍ତି
କି ବୋର୍ଡ ଧରି ସର୍ବେ କର୍ମ କରିଯାନ୍ତି |-୩
ସମସ୍ତେ ସମସ୍ତଙ୍କୁ ଏଠି ପ୍ରଶଂସା କରନ୍ତି
ସବୁ ମହାଦାନୀ ହୋଇ ପ୍ରେମକୁ ଛୁଟାନ୍ତି |-୪
ଭିଡଭାଡ ନାହିଁ କିଛି ରୋଷେଇଶାଳରେ
ସୁସ୍ୱାଦୁ ଖାଦ୍ୟ ପିକ୍ ଦିଶେ ଟାଇମ୍ ଲାଇନ୍ ରେ |-୫
ପୂଜାପାଠରେ ଆଜି ଦେବତା ବିଭୋର
ଭକ୍ତ ଲଗେଇ ଚାଲନ୍ତି ପ୍ରୋଫାଇଲ୍ ରେ ଚିତ୍ର | -୬
କିନ୍ତୁ! ଛୋଟପିଲା ଆଜି ସବୁ ବେସହାରା
ପିତା ମାତା ଅଜା ଆଈ ସବୁ ନେଟ୍ ପ୍ୟାରା | -୭
ପ୍ରୋଫାଇଲ୍ ରେ ଫଟୋ ଦେବାର ଉଦ୍ଦେଶେ
ପିଲାଏ ଯା'ନ୍ତି କପଟୀ ବାପା ମାଆ ସାଥେ | -୮

ଘରେ ପହଞ୍ଚି ପିଲାଙ୍କ ତୁଟିଯାଏ ଆଶା
ଫଟୋ ଅପଲୋଡ୍ କରନ୍ତି ବସି ପିତାମାତା | -୯
ବିଶ୍ୱାସ ହରାନ୍ତି ପିଲା, ତୁଟେ ତାଙ୍କ ଆଶା,
ଦେଖି ମାଆ-ବାପାଙ୍କର ଫେସବୁକ୍ ନିଶା |-୧୦
କୁଟୁମ୍ବରୁ ଧୀରେ ପିଲେ ଅପସରି ଯାନ୍ତି,
ବଡ ହେଲେ ସେ ବି ଅନ୍ତର୍ଜାଲରେ ବସନ୍ତି |-୧୧
ଓମ୍ ଶାନ୍ତିଃ... (ମଞ୍ଜୁବାଳା କବି) 21-10-2014

**ମଧୁପ ରାଜ**

ଧରଣୀ ବକ୍ଷରେ ପାଦ ଅଛି ମୋର ମସ୍ତକେ ମୁକ୍ତ ଆକାଶ
ତା ମଧ୍ୟେ ଶୋଭିତ ସଲିଳ ସହିତ ଅଗ୍ନି, ବାୟୁ ପରକାଶ | -୧
ହୃଦୟ କନ୍ଦରେ ରହିଅଛ ତୁମେ ଅଚଳ ମଧୁପ ରାଜ,
ଲୁଚାଇ ରଖିଛ ପଞ୍ଚ ମହାକୋଷେ ମିଳନ ପଥର ସାଜ | -୨
ଶିରା ପ୍ରଶିରାରେ ବୁହାଇ ଦେଇଛ ଅମୃତର ମଧୁ ଧାରା,
ମଧ୍ୟରେ ମନକୁ ପ୍ରାଚୀର କରିଛ, ଦିଏ ନାହିଁ ତିଳେ ଧରା | -୩
ବେଳ ପୂରିଯିବ, ତୁମେ ଉଡିଯିବ ସଂସାର-ଅମୃତ ନେଇ,
ଶୂନ୍ୟ ରହିଯିବ ମଧୁଚାଟ ଏଠି, ଚିତାରେ ଜଳିବା ପାଇଁ | -୪
ବାହୁଡିବ ପୁଣି ନୂଆ ଚାଟ ଖୋଜି, ଧରି କର୍ମ-ଜ୍ଞାନେନ୍ଦ୍ରିୟ,
ହେ ଜନ୍ମ-ମରଣ-କଷଣ-ତାରଣ ମୋତେ ଏଥୁଁ ମୁକ୍ତି ଦିଅ | -୫

ଓମ୍ ଶାନ୍ତିଃ...

(ମଞ୍ଜୁବାଳା କବି) ୨୭ ସେପ୍ଟେମ୍ବର ୨୦୧୪

**ଅଭୀପ୍ସା**

କରେ କର ଧରି ନିଅ ମୋତେ ତୋଳି ସମୟ ହେଉଛି ଗତ |
ଭରିଦିଅ ତୁମ ପ୍ରେମର ସୁବାସେ ପ୍ରାଣ ମୋର ହେଉ ସିକ୍ତ ||
:୧

ମଧୁର ମିଳନ ସମୟ ଆସିଛି ଫଗୁଣର ଫଗୁ ଧରି |
କର୍ଣ୍ଣରେ ବାଜୁଛି ଅନାହତ ନାଦ ପିତ୍ରାଳୟ ଯିବି ଫେରି || :୨

ଆଶା ଥିଲା ମୋର ସମାଧି ପର୍ଯ୍ୟନ୍ତ ଯିବି ହାତେ ରଖି ହାତ
ସେ ଆଶା ପୂରଣ କରେଇ ଦେବ କି ସମୟର ମହାସ୍ରୋତ ? :୩

ମୁଁ ଯେ ନିରିମାଖି, ଖୋଜି ପାରିବି କି ? ମର୍ତ୍ତ୍ୟଲୋକ ଠାରୁ ଦୂରେ,
ସୂକ୍ଷ୍ମ ଶରୀରେ କେମିତି ଖୋଜନ୍ତି କହି ଦିଅ କେହି ଥରେ ||
:୪

୨୧ ଅଗଷ୍ଟ ୨୦୧୪ ଓଁ ଶାନ୍ତିଃ....

**ନାରଦଙ୍କ ଫେସବୁକ ପ୍ରୀତି**

ନାରଦ କହନ୍ତି ଆସି - ଶୁଣ ଭଗବାନ
ମର୍ତତ୍ୟଲୋକେ କିମ୍ପାଁ ଦେଲ ଫେସବୁକ ଜ୍ଞାନ ?
ଶ୍ରୀ ହରି କହନ୍ତି ହସି - ଦେବର୍ଷି ନାରଦ !
ସେଠାରେ ନାହିଁ ପର-ଆପଣାର ଭେଦ |
ଫୁଲରୁ ଫୁଲେ ଭ୍ରମର କରେ ଗୁଞ୍ଜରଣ,
ବସନ୍ତ ସର୍ବଦା ସେଠି କରେ ବିଚରଣ |
ପ୍ରେମିକ ପ୍ରେମୁକା ସେଠି ଅବାଧ ରୀତିରେ
ଶେୟର୍, ଲାଇକ୍ କରନ୍ତି ଦିନ-ରାତି ନିର୍ଭୟରେ |
ବାପା-ମାଆ-ପିଲା-ଛୁଆ ହରଷ ମନରେ

ଭ୍ରମର ସାଜି ଉଡନ୍ତି ସବୁ ପ୍ରୋଫାଇଲ୍ ରେ |
ଜନ୍ମଜନ୍ମାନ୍ତର ସାଥି ସେଠି ଖୋଜାଚାଲେ,
ରାଣ ଖାଇ ସତ୍ୟପାଠ କରନ୍ତି ଚାଟରେ |
କେତେ ପ୍ରେମୀ, ଦେଶପ୍ରେମୀ, ଜ୍ଞାନୀ, ଗୁଣୀ, ଭକ୍ତ
ସମସ୍ତେ ଏକତ୍ର ତହିଁ ହୁଅନ୍ତି ମିଳିତ |
ସର୍ବ ଗୁଣ ସର୍ବ ଧର୍ମ ମିଳନର ସ୍ଥଳି
ସ୍ୱର୍ଗୀୟ ପ୍ରେମ ସେ ସ୍ଥାନେ ପଡୁଛି ଇଛୁଳି |
ଶୁଣି ଏ ବାଣୀ ଦେବର୍ଷି ପ୍ରଫୁଲ୍ଲିତ ମନ
ଫେସ୍ ବୁକ୍ ଖୋଲି ଆଡ୍ କରି ଚାଲିଲେ ପ୍ରେରଣ |
ପ୍ରଭୁଙ୍କ ପରୀକ୍ଷା ଏହା - ଯେତେ ବୁଝାଇଲି,
ନ ଶୁଣି କହିଲେ - "ଧ୍ୟାନୀ ଦୋଷଦର୍ଶୀ" ବୋଲି |

ଓଁ ଶାନ୍ତିଃ